ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ



*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

**ସମ୍ପାଦିକା**

**ଅନସୂୟା ନନ୍ଦ**



**୬୫ ବର୍ଷ, ଦଶମ ସଂଖ୍ୟା**
**ମଇ, ୨୦୧୬**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**

*ଯୋଗାଯୋଗ*
**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ* **: ୯୮୬୧୦୬୪୮୯୧,**
**୨୪୨୨୫୯୭, ୨୪୨୦୦୭୫**
*email :*
nandaanasuya@hotmail.com
www:odisha publication.com

ଅନ୍ୟାନ୍ୟ ବିଭାଗର ଲେଖକ-- **ପ୍ରତାପ ଚନ୍ଦ୍ର ଭଞ୍ଜ, ଶାଇଶ୍ରୀ ନାଥ, ବୀର କିଶୋର ଚାନ୍ଦ, ସୁଭଦ୍ରା ବେହେରା, ନାରାୟଣ ପ୍ରସାଦ ନନ୍ଦ, ନିମାଇଁ ଚରଣ ଦାସ, ଉତ୍କଳ କେଶରୀ ସାହୁ ।**

**ଗଳ୍ପ ଓ ଜୀବନୀ**



**କବିତା**



**ଜ୍ଞାନ-ବିଜ୍ଞାନ**



**ମନୋରଞ୍ଜନ**



## ଆମ ଚିଠି ମୁଣିରୁ

**ସେଣ୍ଟ୍ ଜାଭିଅର୍ସ ହାଇସ୍କୁଲ୍, ଆନନ୍ଦପୁରରୁ ଉତ୍କଳ କେଶରୀ ସାହୁ**(୮ମ)-- ଆଜି ଚାନ୍ଦ୍‌ଗୁରୁଜୀଙ୍କଠାରୁ ପ୍ରଥମଥର ପାଇଁ 'ସଂସାର' ପତ୍ରିକା ଦେଖିଲି । ପିଲାମାନଙ୍କ ପାଇଁ ଏଥିରେ ବହୁତ ଭଲ ଜିନିଷ ସବୁ ଥିବାରୁ ଆନନ୍ଦିତ ହେଲି । ମାତୃଭାଷାର ସୁରକ୍ଷା ପାଇଁ ଏହି ପତ୍ରିକା ଆମ ମନରେ ଜାତୀୟତା ଭାବ ସୃଷ୍ଟି କରୁଛି ଏବଂ ଆମମାନଙ୍କର ସୃଜନଶୀଳତା ବୃଦ୍ଧି କରୁଛି । ଏହି ପତ୍ରିକାର ସମସ୍ତ ସଦସ୍ୟ ତଥା ଉପଦେଷ୍ଟାଙ୍କୁ ମୋର ସାଧୁବାଦ ।

**ଅରୁଣୋଦୟ ନଗରରୁ ଅଜିତାନନ୍ଦ ଗୋସ୍ୱାମୀ** -- ମାର୍ଚ୍ଚ ମାସ ସଂସାରରେ ପୃଥିବୀର ମହାଦେଶ(୩) ଶୀର୍ଷକ ଲେଖାରେ ଅଷ୍ଟ୍ରେଲିଆ ମହାଦେଶ ବର୍ଣ୍ଣନା ବେଳେ ଲେଖାଯାଇଛି ଏହି ମହାଦେଶରେ 'କର୍କଟ କ୍ରାନ୍ତି' ଯାଇଛି, ମାତ୍ର ଏହା 'ମକର କ୍ରାନ୍ତି' ହେବ ।

**ବରପାଲିପଡ଼ା, ବଲାଙ୍ଗୀରରୁ ଶ୍ରୀ ନାମଯଜ୍ଞ ମିଶ୍ର** -- ମାର୍ଚ୍ଚ ମାସର ସଂସାରରେ ଶ୍ରୀ ହରିଶଙ୍କରଙ୍କର ଫଟୋଚିତ୍ର ପ୍ରଚ୍ଛଦରେ ଶୋଭାପାଉଛି ଦେଖି ପରମାନନ୍ଦ ଲାଭ କଲି, ମାତ୍ର 'ଧୂପକାଠି'ର ଅଭାବ ଦେଖି ଦୁଃଖ ଲାଗିଲା । ଗୋଟିଏ ବା ଦୁଇଟି ପଛକେ ହେଉ ଧୂପକାଠି ନ ଜଳିଲେ ଚେତନାମୟୀ ମା' ସରସ୍ୱତୀ ଉଜ୍ଜୀବିତ ହେବେ କିପରି ? ଏହାକୁ ବନ୍ଦ ନ ରଖି ଚାଲୁ ରଖନ୍ତୁ ।

**ହରିଶଙ୍କର ରୋଡ, ବଲାଙ୍ଗୀରରୁ ଶ୍ରୀ ପ୍ରଦୀପ କୁମାର ଦାଶ–**

ସଂସାରର ସାର ପତ୍ରିକା ସୁନ୍ଦର
'ସଂସାର' ନାମଟି ଯାହାର,
ଶିକ୍ଷଣୀୟ କଥା ଯତନେ ସାଇତା
ଶରୀର ମଧ୍ୟରେ ତାହାର ।
ପାଠକେ ! ତୁଳନା ନାହିଁଟି ଏହାର
ଯେ ପଢ଼େ, ସେ ଜାଣେ, ମନକୁ ତା ଟାଣେ,
ଲୁହାକୁ ଚୁମ୍ବକ ପ୍ରକାର ।।



## ଅଭିନନ୍ଦନ

ଓଡ଼ିଶା ଶିଶୁ-ସାହିତ୍ୟ ଲେଖକ ସମ୍ମେଳନ ତରଫରୁ ଆମ ପରିଚିତ ଲେଖକ ତଥା ବିଶିଷ୍ଟ ଗୀତିକାର **ଶ୍ରୀ ନନ୍ଦ କିଶୋର ସିଂହ, ଶ୍ରୀ ବୀରେନ୍ଦ୍ର ମହାନ୍ତି, ଶ୍ରୀ ରାମଚନ୍ଦ୍ର ନାୟକ, ଶ୍ରୀ ଯଜ୍ଞଦତ୍ତ ସାମନ୍ତରାୟ** ଏବଂ **ସୁଶ୍ରୀ ସବିତା ଭୋଇ** ସମ୍ମାନିତ ହୋଇଛନ୍ତି । **ଶ୍ରୀ ରବୀନ୍ଦ୍ର କୁମାର ମହାପାତ୍ର**ଙ୍କୁ ଗୋବିନ୍ଦପୁର ମହୋତ୍ସବ ଆନୁକୂଲ୍ୟରେ ଶୁଆ-ଶାରୀ ପତ୍ରିକା ତରଫରୁ ସମ୍ବର୍ଦ୍ଧିତ କରାଯାଇଛି । ଏମାନଙ୍କର ଗୌରବରେ ଆମେ ଗୌରବାନ୍ୱିତ । ସେମାନଙ୍କୁ ଅଭିନନ୍ଦନ ସହ...

--**'ସଂସାର' ପରିବାର**

ଏହା ବ୍ୟତୀତ ଅନେକ ଲେଖକ ଓ ପାଠକ ଓଡ଼ିଆ ନୂତନ ବର୍ଷର ଅଭିନନ୍ଦନ ପତ୍ର ପଠାଇଛନ୍ତି । ସେମାନଙ୍କୁ ଧନ୍ୟବାଦ ସହ କୃତଜ୍ଞତା ଜଣାଉଛୁ ।

--**'ସଂସାର'**

## ସଂସାରର ନିୟମାବଳୀ

୧ । ଚିଠିପତ୍ର ବା ଟଙ୍କା ପଠାଇବାବେଳେ ଗ୍ରାହକ ନମ୍ବର ଓ ପିନ୍‌କୋର୍ଡ୍ ସହ ଠିକଣା ଲେଖିବାକୁ ବା ଫୋନ୍ ଦ୍ୱାରା ଜଣାଇବାକୁ ଅନୁରୋଧ । ଏହାଦ୍ୱାରା ସେମାନଙ୍କ ସହିତ ଯୋଗାଯୋଗ କରିବା ସହଜ ହେବ ।

୨ । ବିଜ୍ଞାପନ ଓ ଏଜେନ୍‌ସି ପାଇଁ ପରିଚାଳକଙ୍କୁ ଯୋଗାଯୋଗ କରନ୍ତୁ ।

୩ । ୧୦ଖଣ୍ଡରୁ କମ୍ ପତ୍ରିକା ପାଇଁ ଏଜେନ୍‌ସି ଦିଆଯାଏ ନାହିଁ ।

୪ । ଏଜେଣ୍ଟମାନଙ୍କ 'ସଂସାର' ବାବାଦ ଦେୟ, ୨୦ ତାରିଖ ପୂର୍ବରୁ ଆମ ପାଖରେ ପହଞ୍ଚିବା ଆବଶ୍ୟକ, ନଚେତ୍ ପତ୍ରିକା ପଠାଇବା ସମ୍ଭବ ହେବ ନାହିଁ ।

---

**ଏ ମାସ ପ୍ରଚ୍ଛଦରେ 'ନୂତନ ବୃନ୍ଦାବନ ଧାମ' ବିଷୟରୁ ଚନ୍ଦ୍ରୋଦୟ ମନ୍ଦିରର୍ ରାତ୍ରୀକାଳୀନ ଚିତ୍ର ପ୍ରଦତ୍ତ ।**



# ପୁଷ୍ପଦିଦି

ଶ୍ରୀ ଗଜେନ୍ଦ୍ର ବେହେରା

ଗାଁ' ମୁଣ୍ଡ ଗୋଟିଏ ଛୋଟିଆ ଚାଳଛପର ଘରେ ବୁଢ଼ୀଟିଏ ରହୁଥିଲା । ସେ ନାନା ଦୁଃଖଧନ୍ଦା କରି ଚଳୁଥିଲା । ତା'ବାଡ଼ିରେ ଗୋଟିଏ ପିଜୁଳି ଗଛ ଥିଲା । ସେଥିରେ ବହୁତ ପିଜୁଳି ଫଳୁଥିଲା । ବୁଢ଼ୀ ଘରେ ନ ଥିବା ବେଳେ କେତେକ ସ୍କୁଲ୍ ପିଲା ଲୁଚି ଲୁଚି ଯା'ନ୍ତି, ଟେକା ମାରି ପିଜୁଳି ଖାଆନ୍ତି । ଟେକା ମାଡ଼ରେ ଛୋଟ ଛୋଟ ଡାଳ ଭାଙ୍ଗି କଷି ପିଜୁଳି ଝଡ଼ିପଡ଼େ । ବୁଢ଼ୀ ସାର୍ ଓ ଦିଦିଙ୍କୁ ଏକଥା ଜଣାଏ । ସେମାନେ ପିଲମାନଙ୍କୁ ତାଗିଦ୍ କରନ୍ତି । ପୁଣି ଯେଉଁ କଥାକୁ ସେହି କଥା । ବୁଢ଼ୀ ମନ ଦୁଃଖରେ ଥାଏ ।

ବୁଢ଼ୀର ଘରଠାରୁ କିଛି ଦୂରରେ ଗାଁ'ର ଉଚ୍ଚ ପ୍ରାଥମିକ ସ୍କୁଲ୍ । ସ୍କୁଲର ସାତୋଟି ଶ୍ରେଣୀକୁ ଶିକ୍ଷକ, ଶିକ୍ଷୟିତ୍ରୀ ମିଶି ଛଅ ଜଣ ଥିଲେ । କିଛି ଦିନ ହେଲା ଏହି ସ୍କୁଲକୁ ଜଣେ ଶିକ୍ଷୟିତ୍ରୀ ଆସିଛନ୍ତି । ତାଙ୍କ ନାଁ ପୁଷ୍ପଲତା ମହାପାତ୍ର । ସେ ପାଠପଢ଼ାରେ ଯେମିତି ଦକ୍ଷ, ସ୍କୁଲର ଅନ୍ୟ କାମ କରିବା ପାଇଁ ସେତିକି ଆଗ୍ରହୀ । ସ୍କୁଲରେ ବହୁତ ପିଲା । ସ୍କୁଲର ପଛ ପଟକୁ ଲାଗି ବିସ୍ତୀର୍ଣ୍ଣ ଜାଗା ଅଛି । ସ୍କୁଲର ପ୍ରଧାନ ଶିକ୍ଷକ ହରେକୃଷ୍ଣ ସାହୁ ଜଣେ ଅଭିଜ୍ଞ ଶିକ୍ଷକ । ଶିକ୍ଷକ, ଶିକ୍ଷୟିତ୍ରୀଙ୍କର ପରସ୍ପର ମଧ୍ୟରେ ଭଲ ସମ୍ପର୍କ ଅଛି । ପାଠପଢ଼ା ପ୍ରତି ବିଶେଷ ଧ୍ୟାନ ଦିଆଯାଏ । ସ୍କୁଲରେ ଏତେ ବଡ଼ ହତା ଥିଲେ ମଧ୍ୟ ବଗିଚାଟିଏ କରିବା ପାଇଁ ଆଦୌ ଧ୍ୟାନ ଦିଆଯାଇ ନାହିଁ । ସ୍କୁଲ ଆଗରେ ଅଳ୍ପ କେତୋଟି ଫୁଲ ଗଛ ଅଛି । ସ୍କୁଲର ବଗିଚା ନ ଥିବାରୁ ପୁଷ୍ପଦିଦି ବହୁତ ଦୁଃଖିତ ହେଲେ । ଭଲ ବଗିଚାଟିଏ କରିବା ପାଇଁ ମନେ ମନେ ସଂକଳ୍ପ କଲେ ।

ଆଉ ଦିନେ ପୁଷ୍ପ ଦିଦି, ପ୍ରଧାନ ଶିକ୍ଷକ ହରିବାବୁ ଓ ଅନ୍ୟମାନଙ୍କୁ ଏକତ୍ର କରି ଏ ବିଷୟରେ ଆଲୋଚନା କଲେ । ଶେଷରେ ସ୍କୁଲରେ ଫୁଲଫଳର ବଗିଚାଟିଏ କରିବା ପାଇଁ ସ୍ଥିର ହେଲା ।

ଦିନେ ସ୍କୁଲରେ ଗୋଟିଏ ସଭା ହେଲା । ସଭାରେ ଶିକ୍ଷକ, ଶିକ୍ଷୟିତ୍ରୀ, ସ୍କୁଲ କମିଟିର କେତେ ଜଣ ସଭ୍ୟ, ସ୍କୁଲର ଉପର ଶ୍ରେଣୀର ପିଲାମାନେ ଯୋଗ ଦେଲେ । ସଭାପତିଙ୍କ ଅନୁମତି ନେଇ ପ୍ରଥମେ ପୁଷ୍ପଦିଦି କହିଲେ, "ପିଲାମାନେ ଭଲ କାମ କ'ଣ ? ମନ୍ଦ କାମ କ'ଣ ?– ଏକଥା ତୁମେ ନିଶ୍ଚୟ ଜାଣିଛ । ଭଲ କାମ କଲେ ପ୍ରଶଂସା ମିଳେ । ମନ୍ଦ କାମ କରିଥିବା ଲୋକଙ୍କୁ ସମସ୍ତେ ନିନ୍ଦା କରନ୍ତି । ସେମିତି ଯେତେ ମନ୍ଦ କାମ ଅଛି, ସେଥିରୁ ଚୋରି କରିବା ଗୋଟିଏ ମନ୍ଦ କାମ । ମୁଁ ଶୁଣିଛି ଆମ



ସ୍କୁଲର କେତେକ ଦୁଷ୍ଟ ପିଲା ଜଣେ ଗରିବ ବୁଢ଼ୀର ପିଜୁଳି ଚୋରି କରି ଖାଇଛନ୍ତି । ଏହା ଗୋଟିଏ ମନ୍ଦ କାମ । ନିଜେ ପରିଶ୍ରମ କରି ଆମେ ଯେଉଁ ଜିନିଷ ପାଉ, ସେଥିରୁ ଯେତିକି ଆନନ୍ଦ ମିଳେ, ଚୋରି ଜିନିଷରେ ସେତିକି ଆଦୌ ମିଳେ ନାହିଁ । ଆଜି ଏଇଠି ତୁମେମାନେ ପ୍ରତିଜ୍ଞା କର ଯେ ତୁମେ ପ୍ରତି ପିଲା ନିଜ ନିଜ ବାଡ଼ିରେ ପିଜୁଳି ଗଛ ଲଗାଇବ । ସେଥିରେ ଯେଉଁ ମିଠା ଫଳ ମିଳିବ, ତା'କୁ ଆନନ୍ଦରେ ଖାଇବ । ତୁମକୁ ଆଉ ପର ଉପରେ ନିର୍ଭର କରିବାକୁ ପଡ଼ିବ ନାହିଁ । କଥାରେ ଅଛି– 'ଶିଖ ନିଜ ଗୋଡ଼ରେ ହେବାକୁ ଠିଆ, ପର ହାତକୁ ଚାହିଁ ରହିଛ କିଆଁ ?' ତୁମେ କ'ଣ ପିଜୁଳି ଗଛଟିଏ ଲଗାଇପାରିବ ନାହିଁ ?" ସବୁ ପିଲା ଏକସ୍ୱରରେ କହିଲେ, "ହଁ, ଦିଦି ଆମେ ପାରିବୁ ।" ଦିଦି ପୁଣି କହିଲେ, "ଆମ ସ୍କୁଲରେ ଏତେ ବଡ଼ ଜାଗା ଅଛି, ସେଥିରେ କିଛି ଫୁଲଫଳର ଗଛ ନାହିଁ । ଆମେ ସମସ୍ତେ ଚେଷ୍ଟା କଲେ ସ୍କୁଲରେ ଗୋଟିଏ ସୁନ୍ଦର ବଗିଚା କରିପାରିବା ।'' ପିଲାମାନେ ବହୁତ ଖୁସି ହୋଇଗଲେ । ଏହା ପରେ ପ୍ରଧାନ ଶିକ୍ଷକ ବୃକ୍ଷଲତାର ଉପକାରିତା ସମ୍ପର୍କରେ ପିଲାମାନଙ୍କୁ ସରଳ ଭାବରେ କିଛି କଥା କହିଲେ । ସଭାପତିଙ୍କୁ ଧନ୍ୟବାଦ ଦେବା ପରେ ସଭା ଶେଷ ହେଲା ।

ଏହାପରେ ଦିନେ ସ୍କୁଲରେ ଗୋଟିଏ ବୈଠକ ଡକାଗଲା । ସେଥିରେ ସବୁ ଶିକ୍ଷକ, ଶିକ୍ଷୟିତ୍ରୀ, ସ୍କୁଲ କମିଟିର ସଭ୍ୟ, ସଭ୍ୟା ଯୋଗଦେଲେ । ସ୍କୁଲ ହତାରେ ଫୁଲ ଗଛ, ଫଳ ଗଛ, ପନିପରିବା ଗଛ, ଜାଳେଣି ଗଛ ଲଗାଯିବା ବିଷୟରେ ଆଲୋଚନା କରାଯାଇ ଗୋଟିଏ ଯୋଜନା ପ୍ରସ୍ତୁତ କରାଗଲା । ଏଥିପାଇଁ ଆବଶ୍ୟକ ଟଙ୍କାର ବ୍ୟବସ୍ଥା ମଧ୍ୟ କରାଗଲା । ସ୍କୁଲରେ ଆଦର୍ଶ ବଗିଚାଟିଏ କରିବା ପାଇଁ ପୁଷ୍ପଦିଦି ସମସ୍ତଙ୍କୁ ଅନୁରୋଧ କଲେ । ତାଙ୍କର ବିଶେଷ ଆଗ୍ରହ ଓ ତତ୍ପରତା ଯୋଗୁଁ ସମସ୍ତେ ଉତ୍ସାହିତ ହେଲେ । ବିଶେଷ କରି ପ୍ରଧାନ ଶିକ୍ଷକ ହରିବାବୁ ଏହି କାମରେ ସହାୟତା କରିବାକୁ ଦୃଢ଼ ସଂକଳ୍ପ କଲେ ।

ଯୋଗକୁ ଗ୍ରୀଷ୍ମଛୁଟି ଭିତରେ ୨/୩ ଅସରା ବଡ଼ ବର୍ଷା ହୋଇଗଲା । ଶିକ୍ଷକମାନେ ପ୍ରାୟ ୨୦ଟି ସଜନା ଡାଳ, ୨୫ଟି କଦଳୀ ପୁଆ, ମନ୍ଦାର, ତରାଟ, ଟଗର ଆଦି ଗଛର ଡାଳ ହତା ବାଡ଼ିଯାକ ଲଗାଇଲେ ।

ଦୀର୍ଘ ଦିନ ପରେ ସ୍କୁଲ ଖୋଲିଲା । ପୁଣି ସ୍କୁଲରେ ଗହଳିଚହଳି ଲାଗିଲା । ଶିକ୍ଷକମାନେ ଶିକ୍ଷାଦାନ ଓ କାଗଜପତ୍ର କାମ କରିବାରେ ତତ୍ପର ହେଲେ । ପିଲାମାନେ ମଧ୍ୟ ପଢ଼ାପଢ଼ି ଓ ଲେଖାଲେଖିରେ ଲାଗିପଡ଼ିଲେ । ଗଛଗୁଡ଼ିକର ଯତ୍ନ ନିଆଗଲା । ମଜବୁତ୍ ବାଡ଼ ଥିବାରୁ ଗୋରୁ, ମଇଁଷି ଆଦି ପଶୁ ଫସଲ ନଷ୍ଟ କରିବାର ଭୟ ଆଦୌ ରହିଲା ନାହିଁ । ସେ ବର୍ଷ ବହୁତ ବଡ଼ ବଡ଼ କଖାରୁ, ବହୁତ ବାଇଗଣ ମଧ୍ୟ ଫଳିଲା । ସେଗୁଡ଼ିକ ବିକ୍ରି କରି ବଗିଚା ପାଣ୍ଠିରେ ସମସ୍ତ ଟଙ୍କା ରହିଲା ଓ ତା'ର ହିସାବ ରଖାଗଲା ।

ଏବେ ପୁଷ୍ପଦିଦିଙ୍କ ଉଦ୍ୟମରେ ଗାଁ'ର ଉତ୍ସାହୀ ଯୁବକମାନେ ଗୋଟିଏ ସଂଘ ଗଢ଼ିଛନ୍ତି । ସେମାନେ



ଲୋକଙ୍କୁ 'ଆସ ଗଛ ଲଗାଇବା' ଡାକରା ଦେଉଛନ୍ତି । ସମସ୍ତଙ୍କ ଉଦ୍ୟମରେ ନାଳ ବନ୍ଧ, ନଦୀ ବନ୍ଧ, କଡ଼ରେ ଥିବା ସରକାରୀ ଜାଗାରେ ବର, ଅଶ୍ୱତ୍ଥ, ଚାକୁଣ୍ଡା, ଆକାଶିଆ, ନଡ଼ିଆ, ତାଳଗଛ ପ୍ରଭୃତି ବହୁତ ସଂଖ୍ୟାରେ ଲଗାହେଲା । ଏବେ ସେଗୁଡ଼ିକ କେତେ ବଡ଼ ବଡ଼ ହେଲାଣି ।

ବିଭିନ୍ନ ସମୟରେ ପାଖ ସ୍କୁଲଗୁଡ଼ିକର ଶିକ୍ଷକ, ଶିକ୍ଷୟିତ୍ରୀମାନେ ନାନା କାମରେ ଏହି ସ୍କୁଲକୁ ଆସନ୍ତି । ସେମାନେ ଏହି ସ୍କୁଲର ବାଗ-ବଗିଚା ଦେଖି ଉତ୍ସାହିତ ହୋଇଛନ୍ତି ଓ ନିଜ ନିଜ ସ୍କୁଲରେ ଏ ଦିଗରେ କିଛି କରିଛନ୍ତି । ବଗିଚା କାମ ବ୍ୟତୀତ ଏହି ସ୍କୁଲର ପିଲାମାନଙ୍କର ସ୍ୱାସ୍ଥ୍ୟ, ପରିବେଶ ସ୍ୱଚ୍ଛତା ପ୍ରତି ଧ୍ୟାନ ଦିଆଯାଇଛି । ଖେଳକୌତୁକ ପାଇଁ ମଧ୍ୟ ନାନାପ୍ରକାର ବ୍ୟବସ୍ଥା କରାଯାଇଛି ।

କଥାରେ ଅଛି– 'ଗୋଠ ସଫା ଥିଲେ ଗାଈ ହମାଳି ପଶେ' । ସବୁ ଦୃଷ୍ଟିରୁ ଏହି ସ୍କୁଲ ଭଲ ହୋଇଥିବାରୁ ଅନ୍ୟ ସ୍କୁଲଗୁଡ଼ିକୁ ପଛରେ ପକାଇ ପ୍ରତିବର୍ଷ ଏଥିରେ ବହୁତ ପିଲା ନାମ ଲେଖାଉଛନ୍ତି ।

ଦିନେ ଯେଉଁ ସ୍କୁଲର ଏତେବଡ଼ ଜାଗା ଶ୍ରୀହୀନ ଅବସ୍ଥାରେ ଥିଲା, ଆଜି ତାହା ଶିକ୍ଷକ, ଶିକ୍ଷୟିତ୍ରୀ- ବିଶେଷ କରି ପୁଷ୍ପଲତା ଦିଦିଙ୍କର ଉଦ୍ୟମରେ କେତେ ସୁନ୍ଦର ବଗିଚାଟିଏ ହୋଇପାରିଛି ।

ପିଲାଏ ! କାହାରି ଆନ୍ତରିକ ଉଦ୍ୟମ କେବେ ନିଷ୍ଫଳ ହୁଏନାହିଁ । ସେ ବର୍ଷ ଭଲ କାମ ପାଇଁ ମଣ୍ଡଳ(ବ୍ଲକ)ର ୫ଜଣ ଶିକ୍ଷକ, ଶିକ୍ଷୟିତ୍ରୀଙ୍କୁ ପୁରସ୍କାର ଦିଆଗଲା । ସେମାନଙ୍କ ମଧ୍ୟରୁ ଏହି ଅରଖକୁଦ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଶିକ୍ଷୟିତ୍ରୀ ପୁଷ୍ପଲତା ମହାପାତ୍ର ପ୍ରଥମ ପୁରସ୍କାର ପାଇଲେ । ଏ ଖବର ଶୁଣି ସମସ୍ତେ ବହୁତ ଖୁସି ହେଲେ । (ଆକାଶବାଣୀରେ ପ୍ରଚାରିତ)

*ମହମ୍ମଦପୁର, ତେଣ୍ଡାକୁଡ଼ା, କଟକ*

## ଭାରତରେ ପ୍ରଚଳିତ କେତେକ ହିନ୍ଦୁ ପାରମ୍ପରିକ ପ୍ରଥା



ଆମେ ବୟସ୍କ ବା ଗୁରୁଜନମାନଙ୍କର ପାଦ ଛୁଇଁ ପ୍ରଣାମ କରୁ । ଏହାଦ୍ୱାରା ଆମର ଅହଙ୍କାର ଦୂରୀଭୂତ ହୋଇଥାଏ । ଯେତେବେଳେ କି ସେମାନେ ଆମ ମୁଣ୍ଡରେ ହାତ ଲଗାଇ ଆମକୁ ଆଶୀର୍ବାଦ କରନ୍ତି, ତାଙ୍କ ହୃଦୟରେ ଆମ ପ୍ରତି ସକାରାତ୍ମକ ଭାବବେଗ ସୃଷ୍ଟି ହୋଇଥାଏ । ତାଙ୍କର କରୁଣା ଆମର ଶରୀରରେ ପ୍ରବେଶ କରିଥାଏ । ଦୁଇ ଜଣଙ୍କର କସ୍‌ମିକ ଶକ୍ତି ଦୁଇଦିଗରୁ ପ୍ରବାହିତ ହୋଇ ଦୁହିଁଙ୍କର ମସ୍ତିଷ୍କ ଓ ହୃଦୟରେ ପ୍ରବେଶ କରେ ।

ପରସ୍ପର ହାତ ମିଳାଇବା ବା ଆଲିଙ୍ଗନ କରିବା ଦ୍ୱାରା ମଧ୍ୟ ଅନୁରୂପ ଫଳାଫଳ ଦେଇଥାଏ । ଆମର ମସ୍ତିଷ୍କରେ ଯେଉଁ ଶିରାପ୍ରଶିରା ରହିଛି, ତାହା ଆମ ଶରୀର ସାରା ବିସ୍ତୃତ ହୋଇଛି । ତାହା ଆମ ପାଦ ବା ହାତର ଆଙ୍ଗୁଠିର ଅଗ୍ରଭାଗରେ ଶେଷ ହୋଇଛି । ଆମେ ଯେତେବେଳେ ଆମର ଆଙ୍ଗୁଠିର ଅଗ୍ରଭାଗକୁ ଗୁରୁଜନଙ୍କ ପାଦରେ ସ୍ପର୍ଶ କରୁ, ସଙ୍ଗେ ସଙ୍ଗେ ଦୁଇଟି ଶାନ୍ତ ସଂଯୋଗ ହୋଇଥାଏ । ଆମ ଆଙ୍ଗୁଠି ଏବଂ ପାପୁଲି ସେହି ଶାନ୍ତି ପାଇଁ ଗ୍ରହଣୀୟ ହୋଇଥାଏ ଓ ଠିକ୍ ସେହିଭଳି ତାଙ୍କର ପାଦ ଓ ହାତ ଦାନଶୀଳ ହୋଇଯାଏ ।

(ସଂଗୃହୀତ)



# ଆଇଲାଣି ଧୂମାଳ

ଶ୍ରୀ ପୂର୍ଣ୍ଣଚନ୍ଦ୍ର ଦାସ

ପଣା ସଙ୍କରାନ୍ତି କହିଲା
ବେଲପଣା, ଜଳ–ଛତର ସହିତ
ଏଇ ବଇଶାଖ ଅଇଲା ।୧।
ଡହ ଡହ ଖରା ହେଉଛି
ଜୋତା–ଛତା ଛାଡ଼ି ତତଲା ଭୂଇଁରେ
କହ କିଏ ପାଦ ଦେଉଛି ? ।୨।
ପାଣି ତ ସପନ ହେଲାଣି
ହାଲିଆ ହେଇକି ବାଟୋଇ ଭାଇଟା
ଗଛ ମୂଳେ ବସିଗଲାଣି ।୩।
ଘଣ୍ଟା ବାଜେ ଝାଇଁ ଝାଇଁକି
ରଣପା ଲଗାଇ ଘଣ୍ଟପାଟୁଆଏ
ବୁଲିଲେଣି ସାହିସାହିକି ।୪।
ବସନ୍ତରା ଠେକି ବସିଲା
ମାଟିଘୋଡ଼ା, ଝୁଣା ମନ୍ଦାରର ମାଳ
ଗ୍ରାମଦେବତୀଙ୍କୁ ତୋଷିଲା ।୫।
ଦହିପକା ବାସ ପଖାଳ
ଲସି, ଆଖୁରସ ଲେମ୍ବୁ ସରବତ
ଖୋଜା ହୁଏ ସଞ୍ଜସକାଳ ।୮।
ତବତରେ ମନ ବୁଝୁନି
ଖଟା କି ଆଇଁଷ ଟିକିଏ ନହେଲେ
ତୁଣ୍ଡକୁ ଜମାରୁ ରୁଚୁନି ।୯।
ବଣରେ ପାଚିଲା ବଇଁଚ
ହାଡ଼ ଗଜଗଜ ବେତକୋଳି ସାଥେ
ଚୁଇଁ ଖୋଜେ ଗିଲ, କାଇଁଚ ।୧୦।
ଆସୁଚି ଚନ୍ଦନ ପୂନେଇଁ
ଜହ୍ନ ଆଲୁଅରେ ଚାପ ଖେଳ ହବ
ନାଚିବାରେ ସାଙ୍ଗ ଜମେଇ ।୧୧।
ଆଇ କହେ ଆସେ ଧୂମାଳ
କୁନା ବସିଥିଲା ପାଳି ଧରିଦେଲା
'ଏବେ ଏ ବୁଢ଼ୀକି ସମ୍ଭାଳ !'।୧୨।

*କଂଟାବଣିଆ, ଛତ୍ରପଡ଼ା, ପ୍ରୀତିପୁର, ଯାଜପୁର-୭୫୫୦୧୩*

---



ଦୁଇଜଣ ଅର୍ଦ୍ଧପାଗଳ ଲୋକ ଆସିଲେ । ପ୍ରଥମ ଲୋକଟି କହିଲା– ସିଂହ ଅଣ୍ଡା ଦିଏ ।

ଦ୍ୱିତୀୟ ଲୋକଟି କହିଲା– ସିଂହ ଛୁଆ ଦିଏ ।

ଦୁଇଜଣ ଲୋକ କଳି ଲାଗିଲେ । ସେଇବାଟେ ଯାଉଥିବା ଗୋଟିଏ ଭଲଲୋକ ଆସିଲା । ସେ ପଚାରିଲା– ଭାଇ କାହିଁକି କଳି ଲାଗୁଛ ? ପ୍ରଥମ ଲୋକଟି କଳି ହେବାର ସବୁ କାରଣ କହିଲା ।

ଭଲଲୋକଟି କହିଲା– ଆରେ ଭାଇ ସିଂହ ହେଉଛି ବଣର ରାଜା । ତା'ର ମନ ହେଲେ ଛୁଆ ଦେବ, ମନ ହେଲେ ଅଣ୍ଡା ଦେବ ।

**ସାଇଶ୍ରୀ ନାଥ,** ୫ମ, ସରସ୍ୱତୀ ଶିଶୁ ବିଦ୍ୟାମନ୍ଦିର, ଘଷିପୁରା ।

# ନିଜ ଗାଁ ସବୁଠୁ ଭଲ

## ଶ୍ରୀ ନଗେନ୍ଦ୍ରନାଥ ପଟ୍ଟନାୟକ

ଥରେ ରାମପୁର ଗାଁ'ରେ ଅକାଳ ପଡ଼ିଲା । ଅନ୍ନକଷ୍ଟ ଭୋଗୁଥିବା ସେଠାକାର ପଶୁପକ୍ଷୀମାନଙ୍କ ଭିତରେ ହାହାକାର ପଡ଼ିଗଲା । ଭୋକଉପାସରେ ସେମାନେ ଛଟପଟ ହେବାକୁ ଲାଗିଲେ । କେମିତି ବଞ୍ଚିବେ– ସେଇ ଚିନ୍ତାରେ ସେମାନେ ହରଦମ ଘାରି ହେଉଥାନ୍ତି ।

ଏଭଳି ବିଷମ ପରିସ୍ଥିତରେ କୁକୁରଟିଏ ନିଜ ଗାଁ' ଛାଡ଼ି ଆଉ ଏକ ଗାଁ' ଆଡ଼େ ଧାଇଁଲା । ଅପର ଗାଁରେ ତା' ନଜର ପଡ଼ିଲା ଏମିତି ଗୋଟେ ଘର ଉପରେ, ଯାହା ପରିତ୍ୟକ୍ତ । ଘରର ମାଲିକାଣୀ ସେ ଘରର ରକ୍ଷଣାବେକ୍ଷଣ ପ୍ରତି ଆଦୌ ନଜର ଦେଉ ନ ଥିଲେ । ଏଇ ସୁଯୋଗକୁ ଏକ ମଉକା ବୋଲି ଭାବି କୁକୁରଟି ନିତି ସେ ଘର ଭିତରକୁ ପଶିଯାଏ ଏବଂ ଖୁବ୍ ମଜାରେ ଖାଦ୍ୟ ଖାଇବାକୁ ଲାଗେ । ବଢ଼ିଆ ସୁସ୍ୱାଦୁ ଆହାର ଖାଇ ମୋଟାସୋଟା ହୋଇଗଲା ସିନା; କିନ୍ତୁ ନୂଆ ବିପଦ ତା' ଆଗରେ ଉଭାହେଲା ।



ବିଚରା ସିଏ ଯେମିତି ଆହାର ଖାଇ ବାହାରକୁ ବାହାରିଛି, ଅନ୍ୟ କୁକୁରମାନେ ତାକୁ ଘେରିଯାଇ କାମୁଡ଼ିବାକୁ ଗୋଡ଼େଇଲେ । ବିଚରା ବହୁତ କଷ୍ଟ ଭୋଗିଲା । ନିଜେ ଖୁବ୍ ମନଦୁଃଖ କଲା । ଶେଷରେ ପରିସ୍ଥିତି ଏମିତି ହେଲା ଯେ ସେଇ ଗାଁ' ଛାଡ଼ି ସେ ନିଜ ଗାଁ' ଆଡ଼େ ମୁହାଁଇବାକୁ ବାଧ୍ୟ ହେଲା । ଅପର ଗାଁ'ରୁ ନିଜ ଗାଁ' ଆଡ଼େ ଯେମିତି ସେ ଲେଉଟି ଆସିଛି, ସେଠି ଅନ୍ୟ ଏକ କୁକୁର ତାକୁ ପଚାରିଲା– "ଭାଇ ! ତୁମେ ମୋତେ ଅନ୍ୟ ଗାଁ' କଥା ତ ଶୁଣାଉଥିଲ ନା, କହିଲ ଦେଖି, ତୁମେ ସେଠି କଅଣ ପାଇଲ ଆଉ ଦେଖିଲ ?"

"ଆରେ ସେଠି ମୋର ଜାତିଭାଇ ଲୋକ ମୋର ଶତ୍ରୁ ବନିଗଲେ; କିନ୍ତୁ ଏଠି ଭୋକିଲା ରହିଲେ ବି ନିଜ ଗାଁ'ଠୁ ବଳି ଆଉ କିଛି ଭଲ ସ୍ଥାନ ନାହିଁ । ଅତି କମ୍‌ରେ ତ ଏଠି ଲୋକମାନେ ଆମକୁ ମାରିବେ ନାହିଁ କି କାଟିବେ ନାହିଁ !"

*ଜିଲ୍ଲା କୋଷାଗାର ଅଧିକାରୀ, ପୁରୀ*



୨୧ବର୍ଷିଆ ପ୍ରଥମ ଭାରତୀୟ ମହିଳା ଉଡ଼ାଜାହାଜ ଚାଳକ ଶାରଳା ଠାକ୍‌ରାଲ ।



# ସାନମାମୁଙ୍କ ଅଜଣା କଥା

ଶ୍ରୀ ଯୁଗଳ କିଶୋର ଷଡ଼ଙ୍ଗୀ

ପୃଥିବୀ ଆମର ମାଆ । ତାର ଭାଇ ଜହ୍ନ । ଏଣୁ ଜହ୍ନକୁ ଆମେ ମାମୁ ଆଖ୍ୟା ଦେଇଥାଉ । "ଆ ଜହ୍ନମାମୁ ଶରଦଶଶୀ"......ବୋଲି ଡାକିଥାଉ । ପିଲାଏ ! ଆମ ପୃଥିବୀ ମାଆର ଆଉ ଏକ ସାନଭାଇ ଥିବାର କଥା ତୁମେମାନେ ଜାଣିନାହଁ । ତେବେ ଶୁଣ ସାନମାମୁଙ୍କ ଅଜଣା କଥା ।

ବ୍ରହ୍ମାଣ୍ଡର ସୃଷ୍ଟି ପରେ ସମସ୍ତ ଗ୍ରହ ଗୋଟିଏ ଅନ୍ୟଟିର ଆଗପଛ ହୋଇ ଚୋରସିପାହୀ ଭଳି ଦୌଡ଼ୁଥିଲେ । ବର୍ତ୍ତମାନ ଏକ ଉଲ୍‌କାପିଣ୍ଡର ଅନୁସଂଧାନ କରାଯାଇଛି, ଯାହାକି ପୃଥିବୀ ସହ ମୂଷାବିରାଡ଼ିର ଖେଳ ଖେଳିବାରେ ବ୍ୟସ୍ତ । ଏହି ଅନ୍ତରୀକ୍ଷୀୟ ବସ୍ତୁର କକ୍ଷ ମଧ୍ୟ ଅଛି, ଯେପରି ପୃଥିବୀ ସୂର୍ଯ୍ୟକୁ ପରିକ୍ରମା କରିଥାଏ । ମହାକାଶବିଜ୍ଞାନୀମାନଙ୍କ ମତରେ ଏଥିପାଇଁ କୌଣସି ବିପଦର ସଂକେତ ନାହିଁ । କାରଣ ଏହା ପୃଥିବୀର ସମକକ୍ଷ ନୁହେଁ । ପୃଥିବୀର 'ଗୁରୁତ୍ୱ ଆକର୍ଷଣ ବଳ' ଏହାକୁ ନିଜ ପାଖକୁ ଶୀଘ୍ର ଆଣିବ ନାହିଁ । ଏହି ଉଲ୍‌କାପିଣ୍ଡର ନାମ ବୈଜ୍ଞାନିକମାନେ '୨୦୦୨. ଏ.ଏ.୨୯' ଦେଇଛନ୍ତି ।

୨୦୦୨ଏ.ଏ.୨୯ ପୃଥିବୀରୁ ୫.୯ ମିଲିୟନ୍ କି.ମି ଦୂରରେ ରହିଛି । ମହାକାଶବିଜ୍ଞାନୀମାନଙ୍କ ଦୃଷ୍ଟିକୋଣରୁ ଏହା ପାଖକୁ ଏତେ ଶୀଘ୍ର ଆସିବ ନାହିଁ । ଏହାକୁ ପ୍ରଥମେ ଏକ ଏୟାରଫୋର୍ସ ଦୂରବୀକ୍ଷଣ ଯନ୍ତ୍ର ଦ୍ୱାରା ଦେଖାଯାଇଥିଲା । ଏହି ଦୂରବୀକ୍ଷଣ ଯନ୍ତ୍ରରୁ ଆମେରିକାର ଅନ୍ତରୀକ୍ଷ ଏଜେନ୍‌ସି 'ନାସା' ଦ୍ୱାରା ପୃଥିବୀର ଆଖପାଖ ବସ୍ତୁକୁ ଦେଖିବା ସୁଯୋଗ ମିଳିଥିଲା ।୨୦୦୨ଏ.ଏ.୨୯ ପୃଥିବୀ ଭଳି ସୂର୍ଯ୍ୟଙ୍କୁ ପରିକ୍ରମଣ କରୁଥିବାରୁ ବୈଜ୍ଞାନିକମାନେ ଏହାକୁ 'ପୃଥିବୀର ସାନଭାଇ' ବୋଲି କହୁଛନ୍ତି ।



ଏହା ପୃଥିବୀର ଆଖପାଖ ହେବା ଲାଗି ୯୫ ବର୍ଷ ଲାଗିବ ବୋଲି ବୈଜ୍ଞାନିକମାନେ କିଛଦିନ ପୂର୍ବରୁ ମତପ୍ରକାଶ କରିଛନ୍ତି । ଏହି ଛୋଟ ଉଲ୍‌କାପିଣ୍ଡ ମହାକାଶବିଜ୍ଞାନୀମାନଙ୍କୁ ଆକର୍ଷିତ କରିପାରିଛି । ଏହା ଏତେ ଛୋଟ ଯେ ପୃଥିବୀରୁ ଏହାକୁ ଦେଖିବାକୁ କଷ୍ଟ । ପ୍ରାୟ ୬୦୦ ବର୍ଷରେ ସେ ତାର ପରିକ୍ରମାପଥ ବଦଳାଇବ; ମାତ୍ର ଚନ୍ଦ୍ର ଭଳି ଏହା ପୃଥିବୀର ଉପଗ୍ରହ ହୋଇପାରିବ ନାହିଁ । *(ସଂଗୃହୀତ)*

*ନୀଳଚକ୍ରନଗର, ଟିଟିଲାଗଡ଼, ବଲାଂଗୀର*

# ଖା... ତରକାରୀ ଖା....

ଶ୍ରୀ ସଂଗ୍ରାମ କେଶରୀ ପୃଷ୍ଟି

ଶୀତ ଋତୁର ରାତି । କେଉଁଠି ଥିଲା ଏ କଳାବାଦଲ କେଜାଣି ତୁହାକୁ ତୁହା ବର୍ଷିବା ଆରମ୍ଭ କରିଦେଲା । ଏମିତି ଏକ ଅନ୍ଧାରୁଆ ଶୀତୁଆ ରାତିରେ ଭଗବାନ ବିଷ୍ଣୁ ଓ ମା'ଲକ୍ଷ୍ମୀ ପୃଥିବୀକୁ ବୁଲିବାକୁ ବାହାରିଲେ । ମାଆ ଲକ୍ଷ୍ମୀ କହିଲେ "ଚାଲ, ଆମେ ବେଶ ବଦଳାଇ ମଣିଷ ଘରକୁ ଯିବା । ସେମାନେ ଆମକୁ କେତେ ଭକ୍ତି କରୁଛନ୍ତି, ତା'ର ପରୀକ୍ଷା ନେବା ।" କଥାଟା ବିଷ୍ଣୁଙ୍କ ମନକୁ ପାଇଲା । ଏହା ପରେ ଦୁହେଁ ବେଶ ବଦଳାଇ ଗୋଟିଏ ଗରିବ ସ୍ୱାମୀ-ସ୍ତ୍ରୀ ବେଶରେ ବର୍ଷାରେ ଭିଜି ଭିଜି ଆଗକୁ ଚାଲିଲେ ।

ତାଙ୍କ ଯିବା ବାଟରେ ଗୋଟିଏ ବଡ଼ କୋଠାଘର ଦେଖି ସେମାନେ ଅଟକିଗଲେ । ଫାଟକ ଖୋଲି ଭିତରକୁ ଯାଇ କବାଟ ଠକ୍‌ଠକ୍ କଲେ । ତା' ଭିତରୁ ଜଣେ ଧନୀବ୍ୟକ୍ତି ବାହାରି ପଡ଼ିଲେ । ଏ ଦୁହିଙ୍କୁ ଦେଖି ସେ



ପାଟି କଲେ, "ଯାଅ, ଯାଅ, ଏଠି ଭିକ, ଫିକ କିଛି ମିଳିବ ନାହିଁ ।" ଏହା କହି ସେ ଧଡ଼କିନା କବାଟ ବନ୍ଦ କରିଦେଲେ ।

ବିଚରା ଅସହାୟ ସ୍ୱାମୀ-ସ୍ତ୍ରୀ ଦୁହେଁ ନିରାଶ ହୋଇ ସେଠାରୁ ଚାଲିଗଲେ । କିଛି ବାଟ ଗଲା ପରେ ଗୋଟିଏ କୁଡ଼ିଆ ଦେଖି ସେ ପାଖକୁ ଯାଇ ଡାକ ପକାଇଲେ । ତାଙ୍କର ଗୋଟିଏ ଡାକରେ ଘରର ଟିଣ କବାଟ ଖୋଲିଗଲା । ଭିତରୁ ଜଣେ ସ୍ତ୍ରୀଲୋକ ବାହାରିଆସି ଏମାନଙ୍କ ଅବସ୍ଥା ଦେଖି କହିଲେ– "ଆରେ, ଆରେ ଆପଣମାନେ ତ ପୂରାପୂରି ବର୍ଷାରେ ଭିଜି ଯାଇଛନ୍ତି ! ଆସନ୍ତୁ, ଘର ଭିତରକୁ ଆସନ୍ତୁ ।"

ମାନବ ବେଶଧାରୀ ମାଆ ଲକ୍ଷ୍ମୀ ଓ ପ୍ରଭୁ ବିଷ୍ଣୁ ଘର ଭିତରକୁ ଯାଇ ଦେଖନ୍ତି ଘରଟି ନିହାତି ଦଦରା । ସେଇଠି ଦୁଇଟି ଭଙ୍ଗା ଖଟ ପଡ଼ିଛି । ସ୍ତ୍ରୀଲୋକଟି ଭାରି ଗରିବ ଜଣାପଡୁଛି । ତଥାପି ସେ ଆଗ୍ରହର ସହିତ ଦୁହିଙ୍କୁ ଘରେ ବସାଇଲା । ଟ୍ରଙ୍କ୍ ଭିତରେ ସାଇତା ଚିରା, ଫଟା ପୁରୁଣା କପଡ଼ା ଆଣି ପିନ୍ଧିବାକୁ ଦେଲା ।

ସ୍ତ୍ରୀଲୋକଟିର ଆଗ୍ରହ ଦେଖି ସେମାନେ ଲୁଗା ବଦଳାଇଲେ । ଯା' ଭିତରେ ସ୍ତ୍ରୀଲୋକଟି ଗରମ ଗରମ ବାଜରା ରୁଟି ତିଆରି କରି ସେମାନଙ୍କ ଆଗରେ ରଖିଦେଲା, ଆଉ ଲାଜ ଲାଜ ହୋଇ କହିଲା, "ଅତିଥି ପରା ଭଗବାନ; ହେଲେ ଦୁଃଖର କଥା, ମୋ ପାଖରେ ଆପଣଙ୍କୁ ଦେବା ପାଇଁ କିଛି ବି ନାହିଁ । ଏଇ ଶୁଖିଲା ରୁଟି କେଇପଟ ତିଆରି କରିଛି । ଏତକ ଖାଇ ଆପଣ ସନ୍ତୁଷ୍ଟ ରୁହନ୍ତୁ ।" ଏହି ସମୟରେ ଘରର ମୁଖିଆ ଲୋକଟି ଗୋଛାଏ କାଠ ମୁଣ୍ଡାଇ ଘର ଭିତରକୁ ଆସିଲା । ଅତିଥିଙ୍କୁ ଦେଖି ଖୁସି ହେଲା । ମୁଣ୍ଡରୁ କାଠଗୋଛାକ ଓହ୍ଲେଇ



ସେମାନଙ୍କୁ ମୁଣ୍ଡିଆ ମାରିଲା । ଖିଆପିଆ ସରିଲା ପରେ ସ୍ୱାମୀ-ସ୍ତ୍ରୀ ଅତିଥିଙ୍କୁ ଖଟରେ ଶୁଆଇ ନିଜେ ତଳେ ଶୋଇପଡ଼ିଲେ ।

ସକାଳ ହେଲା । କୁଣିଆଁ ଘରୁ ଯିବା ପାଇଁ ବାହାରିଲେ । ସ୍ୱାମୀ-ସ୍ତ୍ରୀ ରୁଟି ତିଆରି କରି ସେମାନଙ୍କୁ ବାଟରେ ଖାଇବା ପାଇଁ ଦେଲେ । ଏମାନଙ୍କ ସେବା ଦେଖି କୁଣିଆଁ ଭାରି ଖୁସି ହେଲେ । ସେମାନେ ଆନନ୍ଦରେ ଗଦ୍‌ଗଦ୍ ହୋଇ ତାଙ୍କୁ ବରଦାନ ଦେଲେ, "ତୁମ ସେବାର ଫଳ ତୁମକୁ ନିଶ୍ଚୟ ମିଳିବ । ଏବେଠାରୁ ତୁମେ ଯେଉଁ କାମ ଆରମ୍ଭ କରିବ, ତାହା ସଞ୍ଜ ଯାଏଁ ଚାଲିବ ।''

କୁଣିଆଁ ଗଲା ପରେ ସ୍ତ୍ରୀଲୋକଟି ତରକାରି ଗିନାଟିକୁ ସଫା କରିବା ପାଇଁ ଉଠାଇଲା ବେଳକୁ ଦେଖେ ତ ସେଥିରେ ସୁନାମୋହର ସବୁ ପୂରି ରହିଛି । ସେ ଗିନାଟିକୁ ଓଲଟାଇଦେବାରୁ ସେଥିରେ ସୁନାମୋହର ପୁଣି ଭର୍ତ୍ତି ହୋଇଗଲା । ଏହା ପରେ ସେ ଯେତେଥର ଗିନା ଓଲଟାଇଲା ସେତେଥର ସୁନାମୋହର ପାଇଲା । ଏ କାମ ସଞ୍ଜ ଯାଏଁ ଚାଲିଲା । ଦେଖୁ ଦେଖୁ ଗରିବ ସ୍ୱାମୀ-ସ୍ତ୍ରୀ ଗୋଟିଏ ଦିନରେ ଧନୀ ହୋଇଗଲେ । ଏହା ପରେ ସେମାନେ ଏକ ସୁନ୍ଦର କୋଠାଘର କିଣିଲେ । ବଡ଼ ଲୁଗାଦୋକାନଟିଏ ମଧ୍ୟ ଦେଲେ । ଖୁବ୍ ସୁଖଶାନ୍ତିରେ ସେମାନଙ୍କ ଦିନଟିମାନ କଟିବାକୁ ଲାଗିଲା ।

ଖୁବ୍ ଅଳ୍ପ ଦିନରେ ଗରିବରୁ ଧନୀ ହୋଇଯିବାର ଦେଖି ସେମାନଙ୍କ ପଡ଼ୋଶୀ ଈର୍ଷାରେ ଜଳିବାକୁ ଲାଗିଲେ । ଅସଲ କଥାଟା ଜାଣିବା ପାଇଁ ସେମାନେ ତାଙ୍କ ଘରକୁ ଗଲେ । ବିଚରା ସରଳ ସ୍ୱାମୀ-ସ୍ତ୍ରୀ ସବୁ ସତକଥା ଗୋଟି ଗୋଟି କରି କହିଦେଲେ । ଏକଥା ଶୁଣି ପଡ଼ୋଶୀ ବ୍ୟବସାୟୀ ଦୁଃଖରେ ମୁଣ୍ଡ ବାଡ଼େଇ ପକାଇଲେ । କାହିଁକି ନା ସେହି କୁଣିଆଁ ଏଠାକୁ ଆସିବା ପୂର୍ବରୁ ଆଗ ତାଙ୍କ ଘରକୁ ଆସିଥିଲେ । ହେଲେ ସେ ତାଙ୍କୁ ଗାଳିମନ୍ଦ ଦେଇ ତାଙ୍କ ଘରୁ ତଡ଼ିଦେଇଥିଲେ । ଏବେ କ'ଣ ଆଉ କରାଯିବ ? ନିଜ ଭାଗ୍ୟକୁ ନିନ୍ଦା କରି ସେମାନେ ପୁଣି ଥରେ ସେ ସୁଯୋଗର ଅପେକ୍ଷାରେ ରହିଲେ ।

ସତକୁ ସତ ତାଙ୍କ ଇଚ୍ଛା ପୂରଣ ହେଲା । ଦିନେ ଏକ ବର୍ଷା ରାତିରେ ପୂର୍ବର ସେହି କୁଣିଆଁଦୁହେଁ ପଡ଼ୋଶୀ ବ୍ୟବସାୟୀର କୋଠାଘରେ ପହଞ୍ଚି କବାଟ ଠକ୍‌ଠକ୍ କଲେ । ବ୍ୟବସାୟୀଜଣଙ୍କ ବଡ଼ ଉତ୍ସାହର ସହିତ କବାଟ ଖୋଲିଲେ । ସ୍ୱାମୀ-ସ୍ତ୍ରୀ ଦୁହେଁ ଅତି ଆଦରରେ କୁଣିଆଁଙ୍କୁ ଘରକୁ ପାଛୋଟି ନେଲେ । ଗରିବ ଲୋକର ସ୍ୱାମୀ-ସ୍ତ୍ରୀଙ୍କଠାରୁ ଶୁଣିଥିବା କଥା ଅନୁସାରେ ଏମାନେ ବି ତାଙ୍କୁ ପୁରୁଣା ଲୁଗା ପିନ୍ଧିବାକୁ ଦେଲେ । ତାଙ୍କ ସ୍ତ୍ରୀ ବାଜରା ରୁଟି ତିଆରି କରି ଖାଇବାକୁ ଦେଲେ । କୁଣିଆଁଙ୍କଠାରୁ ବର ପାଇବାର ନିଶା ତାଙ୍କୁ ଏତେ ଘାରିଥିଲା ଯେ ସେମାନେ ସେହି ସ୍ୱାମୀ-ସ୍ତ୍ରୀଙ୍କର ନକଲ କଲେ । ସେ ଚାହିଁଥିଲେ ଯା'ଠୁ ଭଲ ଖାଦ୍ୟ ଓ ଭଲ ଲୁଗା ଦେଇପାରିଥାନ୍ତେ, ମାତ୍ର ବର ପାଇବାରେ କାଳେ ଅସୁବିଧା ହେବ, ତେଣୁ ଜାଣିଶୁଣି ଏମିତି ବାହାନା କଲେ ।

ରାତିରେ ସେମାନେ କୁଣିଆଁଙ୍କୁ ଖଟରେ ଶୁଆଇଦେଇ ଖଟ ଥାଇ ମଧ୍ୟ ନିଜେ ତଳେ ଶୋଇ ପଡ଼ିଲେ । କେମିତି ରାତି ପାହିବ ଆଉ ବର ମିଳିବ– ଏ ଚିନ୍ତାରେ ସେମାନଙ୍କୁ ନିଦ ବି ହେଲାନାହିଁ । ସକାଳ ହେଲା । କୁଣିଆଁ ସେଠାରୁ ଯିବାକୁ ବାହାରିଲା ବେଳକୁ ସ୍ତ୍ରୀଲୋକଟି କିଛି ବାଜରା ରୁଟି ବାନ୍ଧି ତାଙ୍କ ହାତକୁ ବଢ଼ାଇଦେଲା । ଏଥର ଦୁହେଁ ବର ପାଇବା ଆଶାରେ କୁଣିଆଁଙ୍କ ଆଗରେ ଠିଆ ହେଲେ ।

ଛଦ୍ମବେଶୀ ବିଷ୍ଣୁ ଓ ମା'ଲକ୍ଷ୍ମୀ ସବୁକଥା ଜାଣିପାରି ମୁରୁକି ହସି ସେମାନଙ୍କୁ କହିଲେ, "ତୁମର ଇଚ୍ଛା ଅବଶ୍ୟ ପୂରଣ ହେବ । ଯେଉଁ କାମ ତୁମେ ଏବେଠାରୁ ଆରମ୍ଭ କରିବ, ତାହା ସଞ୍ଜ ଯାଏଁ ଚାଲିବ ।'' ଏ କଥା ପାଇଁ ତ ସେମାନେ ଚାହିଁ ବସିଥିଲେ । କୁଣିଆଁଙ୍କ କଥା ଶୁଣି ତାଙ୍କର ଖୁସି ଦେଖେ କିଏ !

ତରକାରି ଗିନା ଓଲଟାଇଲେ ସୁନାମୋହର ବାହାରିବ– ଏକଥା ତାଙ୍କ ମୁଣ୍ଡକୁ ଏମିତି ଘାରିଥିଲା ଯେ କିଏ ଆଗ ଏ କାମ କରିବ, ତାକୁ ନେଇ ଦୁହିଁଙ୍କ ଭିତରେ ଝଗଡ଼ା ଆରମ୍ଭ ହୋଇଗଲା । ଅନେକ ଯୁକ୍ତିତର୍କ ପରେ ସ୍ଥିର ହେଲା ଯେ ସ୍ତ୍ରୀ ହିଁ ଆଗ ଗିନାଟିକୁ ଓଲଟାଇବ । ତେଣୁ ସ୍ତ୍ରୀଲୋକଟି ଯେମିତି ଗିନାଟିକୁ ଓଲଟାଇଛି, ସେଥିରୁ ତରକାରି ବାହାରିଲା । କଥାଟା ହେଲା– ଗଲା ରାତିରେ ସ୍ତ୍ରୀ ତରକାରି କରିଥିବା ସତ୍ତ୍ୱେ ଲୋଭରେ ତାହା କୁଣିଆଁଙ୍କୁ ନ ଦେଇ ରଖିଥିଲା । ଏକଥା ଏବେ ତା'ର ମନେପଡ଼ିଲା । ଏଣୁ ସେ ପୁଣି ଗିନା ଓଲଟାଇଲା । ସେଥିରୁ ପଡ଼ିଲା ତରକାରି । ଏମିତି ରୀତିମତ ଚାଲିଲା; ହେଲେ ସେଥିରୁ ସୁନାମୋହରଟିଏ ବି ବାହାରିଲା ନାହିଁ । ଖାଲି ବାସି ତରକାରିରେ ସେ ଜାଗାଟା ପୂରିଉଠିଲା । ସଞ୍ଜ ହେଲା ବେଳକୁ ଘରସାରା ଖାଲି ତରକାରି ଭର୍ତ୍ତି ।

ଦୁହେଁ ଏଥର ଆଉ କରିବେ ବା କ'ଣ ! ମନ ମାରି ରହିଲେ । ଲୋଭ କରିବା ଯୋଗୁଁ ତାଙ୍କର ଆଜି ଏ ଦଶା । ସୁନାମୋହର ଆଶାରେ ଘରଟା ତରକାରିରେ ପୂରିଉଠିଲା । ଦୁହେଁ ଏଥର ନିଜ ଭାଗ୍ୟକୁ ନିନ୍ଦା କରି ତରକାରିର ସବୁ ସଫା କରିବାରେ ଲାଗିପଡ଼ିଲେ । ତାଙ୍କୁ ଲାଗୁଥିଲା କିଏ ଯେମିତି ସେମାନଙ୍କୁ ଖତେଇ ହୋଇ କହୁଛି, "ଖା...ତରକାରି ଖା !"

(ହିମାଚଳ ପ୍ରଦେଶ ଲୋକକଥା)

*କିଶୋରନଗର ହାଇସ୍କୁଲ, ରାଜକିଶୋରନଗର, ଅନୁଗୋଳ- ୭୫୯୧୨୬*

---

ଶ୍ରୀ ବୀରକିଶୋର ଚାନ୍ଦ



ପାଞ୍ଚଟି ଅକ୍ଷରେ ନାମ ମୋହର
ଜଙ୍ଗଲ ଭିତରେ ମୋହରି ଘର
୧ମ ୫ମ କରିଲେ ଯୋଗ
ଛୁଆ ଓ ମାଆର ସ୍ନେହକୁ ବୁଝାଉଥିବ ।
୨ୟ ୪ର୍ଥ ଯୋଗ କରିବ
ଶିବଙ୍କ ପ୍ରିୟପୁଷ୍ପକୁ ବୁଝାଉଥିବ ।
୩ୟ ୫ମ କରିଲେ ଯୋଗ
ମସଲା ବଟାରେ ଦରକାର ହେବ ।
୪ର୍ଥ ୫ମ କରିଲେ ଯୋଗ
ଛଳନାକୁ ସେ ବୁଝାଉଥିବ ।
ଏହି ଧନ୍ଦାକୁ କହିବ ଯିଏ
ମାଛ ତରକାରି ଖାଇବ ସିଏ ।

*ପୁରୁଣା କଟକ, ଫୁଲଝରି, ବୌଦ୍ଧ*



*(ଉତ୍ତର ୨୦ ପୃଷ୍ଠାରେ)*

# ମମତା ପାଗଳ ମଣିଷ ଜଣେ

ରମେଶ ଚନ୍ଦ୍ର ଭଞ୍ଜ

ଆଖିରୁ ଚଷମା, ହାତରୁ କଲମ, ପାଖରୁ ବହି,
ଛାଡ଼ ହୋଇନାହିଁ ଜୀବନ ଜଞ୍ଜାଳ ଭିତରେ ରହି,
ସତତ ସଜାଗ ସଇନିକ ସମ ଜୀବନ ରଣେ,
ଭାଷା ଶୁଦ୍ଧି ପାଇଁ ମମତା ପାଗଳ ମଣିଷ ଜଣେ ।

ସେ ଥିଲେ ରାଜୀବଲୋଚନ କୃଷ୍ଣ ପରମାନନ୍ଦ,
ଦୂର କରି ପାଶୁ ଛଳ, ଛଦରମ, କପଟ, ଛନ୍ଦ,
ଆହାରେ, ବିହାରେ, ଶୟନେ, ସପନେ ଦୁନିଆ କଣେ,
ଶତ-ଶତ ଶିଶୁ ଗଠନ ପାଗଳ ମଣିଷ ଜଣେ ।

ଭାସି ଯାଉଥିଲା 'ଭାଷାର-କଟକ' ଭୀଷଣ ସୁଏ,
ଅଶୁଦ୍ଧି ଭିତରେ ବୁଡ଼ି ଯାଉଥିଲେ ଦୁହିତା, ପୁଏ,
ମଣି ମରକତ ନରପତି ସମ 'ଗୁରୁଜୀ ନନ୍ଦ'
ଗଢ଼ି ଦେଇଅଛ ଭାଷା-କାଠଯୋଡ଼ି ପଥର ବନ୍ଧ ।

"ଲେଖନୀର ପାଠାଶାଳା"ଟିଏ ଗଢ଼ି କଲମ ଚାଳି,
ବାଢ଼ି ଯାଇଅଛ ବଢ଼ିଆ ଜିନିଷ ଅନେକ ଭାଳି,
ଦେଶ-ବିଦେଶରୁ ଖୋଜିଲୋଡ଼ି ଆଣି ଅଜଣା କଥା,
ସରଳ ଭାବରେ ଭରି ଦେଇଅଛ ଆମରି ମଥା ।

ସରଗ ରାଇଜେ କେମିତି ରହିଛ 'ସଂସାର' ଭୁଲି,
ତେଲେଙ୍ଗା ବଜାର ଛକ ଆଡ଼େ କେବେ ଆସୁନ ବୁଲି ?
କାହିଁ ଗଲା ତୁମ କାହାଣୀ, କବିତା, ମଧୁର ଗିର !
ପାଦ ତଳେ ଆଜି ପ୍ରଣତି ବାଢୁଛି ନୁଆଇଁ ଶିର ।

(ପୂଜ୍ୟ ରାମକୃଷ୍ଣ ନନ୍ଦଙ୍କ ଉଦ୍ଦେଶ୍ୟରେ ରଚିତ କବିତା ଅର୍ଘ୍ୟ, ରମେଶ ଚନ୍ଦ୍ର ଭଞ୍ଜଙ୍କ ଦ୍ୱାରା । ରଚନାକାଳ ସମ୍ଭବତଃ ୨୦୦୧ । ଓଡ଼ିଶା ମାଟିର ଦୁଇଜଣ ବରପୁତ୍ର, ବିଶେଷ କରି ଓଡ଼ିଆ ଶିଶୁ ସାହିତ୍ୟ ଓ ଭାଷା କ୍ଷେତ୍ରରେ ଅବଦାନ ପାଇଁ ପରିଚିତ ଓ ସମ୍ମାନିତ; ଏବେ ସ୍ୱର୍ଗରେ । ସ୍ୱର୍ଗତ ଭଞ୍ଜଙ୍କ ଅନେକ ପ୍ରକାଶିତ ଲେଖାଗୁଚ୍ଛରୁ ତାଙ୍କର ଯୋଗ୍ୟପୁତ୍ର ପ୍ରତାପ ଭଞ୍ଜଙ୍କ ଦ୍ୱାରା ଆବିଷ୍କୃତ ଏ ଅପ୍ରକାଶିତ କବିତା ।)

# ସାଧାରଣ ଜ୍ଞାନ ପରୀକ୍ଷା

ଶ୍ରୀ ଜ୍ୟୋତିରଂଜନ ବିଶ୍ୱାଳ

୧. ପ୍ରଥମ ରାଜୀବ ଗାନ୍ଧୀ ଖେଳ ପୁରସ୍କାର ବିଜେତାଙ୍କ ନାମ କ'ଣ ?

୨. କର୍କଟ କ୍ରାନ୍ତି (Tropic of Cancer) ଭାରତର କେତୋଟି ରାଜ୍ୟ ଦେଇ ଅତିକ୍ରମ କରିଛି ? ସେହି ରାଜ୍ୟଗୁଡ଼ିକର ନାମ କ'ଣ ?

୩. ଡାକ ବିଭାଗର ପିନ୍ କୋଡ୍ କେତେ ଅଙ୍କ ବିଶିଷ୍ଟ ଏକ ସଂଖ୍ୟା ?

୪. ଏମାନଙ୍କ ମଧ୍ୟରୁ କେଉଁ ଗ୍ରହର ୧୩ଟି ଉପଗ୍ରହ ଅଛି ? କ) ଶୁକ୍ର, ଖ) ମଙ୍ଗଳ, ଗ) ୟୁରାନସ୍, ଘ) ନେପଚ୍ୟୁନ୍

୫. ନନ୍ଦଲାଲ ବୋଷ୍ କେଉଁ କ୍ଷେତ୍ରରେ ବ୍ୟୁତ୍ପତ୍ତି ଲାଭ କରିଛନ୍ତି ?

୬. PMJDYର ପୂର୍ଣ୍ଣ ରୂପଟି କ'ଣ ?

୭. 'ଆଦିଭୂମି' ପୁସ୍ତକର ରଚୟିତା କିଏ ?

୮. କେଉଁ ବନ୍ଦର ବିଶ୍ୱର କଫି ବନ୍ଦର (Coffee port of the World) ଭାବରେ ମାନ୍ୟତା ଲାଭ କରିଛି ?

୯. ଲୀଳାବତୀ ପୁରସ୍କାର କେଉଁ କ୍ଷେତ୍ରରେ ଉତ୍କର୍ଷତା ପାଇଁ ପ୍ରଦାନ କରାଯାଇଥାଏ ?

୧୦. ଦ୍ରୋଣାବଲ୍ଲୀ ହରିକା (Dronaballi Harika) କେଉଁ ଖେଳ ସହ ସଂପୃକ୍ତ ?

*ଦୁର୍ଗାପୁର, ତାଳଚେର, ଅନୁଗୁଳ-୭୫୯୧୦୦*

*(ଉତ୍ତର ୨୪ ପୃଷ୍ଠାରେ)*

## ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି (୧)

ଶ୍ରୀ ଉମାକାନ୍ତ ମହାନ୍ତି

ରାତିଟି କ୍ରମଶଃ ଗାଢ଼ରୁ ଗାଢ଼ତର ହୋଇ ଚାଲିଥାଏ । ଲୋକ ଚଳାଚଳ ମଧ୍ୟ ବହୁତ କମି ଆସିଥାଏ । ଏହି ସମୟରେ କଳା ରଂଗର ବ୍ରିଟିଶ ଅଷ୍ଟିନ୍ ଗାଡ଼ି ଖଣ୍ଡିଏ ଆସି ଫଇଜାବାଦ ସହର ତଳି ଅଞ୍ଚଳରେ ଜଣେ ଭଦ୍ରବ୍ୟକ୍ତିଙ୍କ ଦାଣ୍ଡଦୁଆର ମୁହଁରେ ରହିଲା ।

ଗାଡ଼ିଟିରୁ ଦୁଇଜଣ ବ୍ୟକ୍ତି ଫଟାଫଟ୍ ଓହ୍ଲାଇ- ପଡ଼ିଲେ । ସେମାନେ ମଧ୍ୟ ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ କଳା ପୋଷାକ ପିନ୍ଧିଥାଆନ୍ତି । ସେମାନଙ୍କ ମଧ୍ୟରୁ ଜଣେ ଦାଣ୍ଡ କବାଟ କିଛି ସମୟ ପାଇଁ ଠକ୍ ଠକ୍ କଲେ । କବାଟଟି ଖୋଲିଯିବାରୁ ବ୍ୟକ୍ତିଜଣଙ୍କ ପ୍ରଶ୍ନକଲେ, "ଏଇଟା ଠାକୁର ଗୁରୁଦତ୍ତ ସିଂଙ୍କ ଘର ତ....... ?"

"ହଁ, କ'ଣ ହେଲା ? ଆପଣମାନେ କିଏ ? ଏତେ ରାତିରେ ?"

"ଘର ଭିତରକୁ ଚାଲନ୍ତୁ, ଆମେ ସବୁ କଥା କହିବୁ ।" ଆଗନ୍ତୁକମାନଙ୍କ ମଧ୍ୟରୁ ଦ୍ୱିତୀୟ ବ୍ୟକ୍ତିଜଣଙ୍କ ପ୍ରଶ୍ନ କଲେ, "ଆଜ୍ଞା, ଆମେ ଶୁଣୁଛୁ ଆପଣଙ୍କ ଖମାର ଘରଟିକୁ କୁଆଡ଼େ ଭଡ଼ାଦେବାକୁ ଆପଣ ଗ୍ରାହକ ଖୋଜୁଛନ୍ତି ?"

"ହଁ, ଆପଣ ଠିକ୍ କଥା ଶୁଣିଛନ୍ତି । ଘରଟି ଭାରି ନିରୋଳା । ଫଇଜାବାଦ ସହର, ବଜାରଠାରୁ ଦୂରରେ । ଘର ଚାରିପଟେ ଗହଳିଆ ଗଛଲତାର ବଗିଚାଟିଏ ଅଛି । ପାଣି, ପାଇଖାନା, ରୋଷଘର, ଠାକୁରଘର ସବୁ ଅଛି । ଗାଡ଼ି ରଖିବାକୁ ଗ୍ୟାରେଜ୍‌ଟିଏ ବି ଅଛି । ତେବେ ଆପଣମାନେ କିଏ ? କେଉଁଠୁ ଆସିଛନ୍ତି ? ଘରଭଡ଼ା ଟଂକାଟା କଥା ଶୁଣିଛନ୍ତି କି ? ମାସକୁ ପୂରା ଚାରିହଜାର ନ ହେଲେ ମୁଁ ଘରଟିକୁ ଭଡ଼ାଦେବାକୁ ରାଜି ନୁହେଁ ।"

"ଆମେ ଦିଲ୍ଲୀରୁ ଆସିଛୁ । ଟଂକା ପାଇଁ ଆପଣ ଆଦୌ ଚିନ୍ତା କରନ୍ତୁ ନାହିଁ । ଏଇ ନିଅନ୍ତୁ ଛ'ମାସର ଭଡ଼ା ବାବଦକୁ ଆପଣ ଚବିଶ ହଜାର ଟଂକା ଆଗତୁରା ଧରନ୍ତୁ । ଆଉ ପରେ ଦେଖାଯିବ । ହଁ, ଆମର ଗୋଟିଏ ସର୍ତ୍ତ ଅଛି; ଆଶା, ଆପଣ ସେ ସର୍ତ୍ତ ରକ୍ଷା କରିବେ ।"
"କ'ଣ ଆପଣଙ୍କର ସର୍ତ୍ତ ?"

"ଆମେ ଆମ ଗୁରୁବାବାଙ୍କ କିଛି ନିରୋଳା ସାଧନ ପାଇଁ ଏହିଭଳି ଘରଟିଏ ସନ୍ଧାନରେ ଥିଲୁ । ଯାହାହେଉ ଆପଣଙ୍କ ଘରଟି ମିଳିଗଲା, ଭଲହେଲା । ଆମ ଗୁରୁବାବା ଲୋକବାକ ଯିବାଆସିବାକୁ ପସନ୍ଦ କରନ୍ତି ନାହିଁ । ତାଙ୍କୁ ଯେପରି ଅଯଥାରେ କେହି ବିରକ୍ତ ନ କରନ୍ତି ।"

"ମୋର ଏଥିରେ କିଛି ଅସୁବିଧା ନାହିଁ । ମାସକୁ ମାସ ମୋର ଘରଭଡ଼ାଟା ମୁଁ ପାଇଗଲେ ହେଲା ।"

"ତା' ହେଲେ ଆସନ୍ତାକାଲି ଘରଟିକୁ ଟିକିଏ ସଫା କରାଇ ଦେଇଥିବେ । ଆମେ ସନ୍ଧ୍ୟାସୁଦ୍ଧା ଆପଣଙ୍କଠାରୁ ଚାବିଟି ନେଇଯିବୁ ।"

ତା'ପରଦିନ ମଧ୍ୟରାତ୍ରୀ ସୁଦ୍ଧା ଚାରି ପାଞ୍ଚଖଣ୍ଡ ଗାଡ଼ି ଗୁରୁଦତ୍ତ ସିଂଙ୍କ ଖମାର ଘର ପାଖେ ଲାଗିଲା । ସେଥିରୁ କିଛି ଲୋକ ଫଟାଫଟ୍ ଡେଇଁପଡ଼ି କାମରେ ଲାଗିଗଲେ । ଗାଡ଼ିଗୁଡ଼ିକରେ ତଳଉପର କରି ରଖାଯାଇଥିବା ବଡ଼ ବଡ଼ ଷ୍ଟିଲ୍ ଟ୍ରଙ୍କ୍‌ଗୁଡ଼ିକ ତଳକୁ ଓହ୍ଲାଇ ପକାଇଲେ । ସାଥିରେ ତାଙ୍କର ଆଉ ଜଣେମାତ୍ର ବ୍ୟକ୍ତି ଓହ୍ଲାଇ ଆସିଲେ । ବ୍ୟକ୍ତିଜଣଙ୍କ ତାଙ୍କ ହାତ ଧରି ଖମାର ଘର ଭିତରକୁ

ନେଇଗଲେ । ଟ୍ରଙ୍କ୍‌ଗୁଡ଼ିକୁ ବି ଖମାର ଘର ଭିତରକୁ ନିଆଗଲା । ଅନ୍ୟମାନେ ସେହି ଅନ୍ଧାର ଭିତରେ ଅଦୃଶ୍ୟ ହୋଇଗଲେ ।

୧୯୬୫ ମସିହାରୁ ୧୯୮୫– ଦୀର୍ଘ କୋଡ଼ିଏ ବର୍ଷ ଧରି ଗୁରୁବାବା ଗୁରୁଦତ୍ତ ସିଂଙ୍କ ଖମାର ଘରେ ନିରୋଳା ସାଧନରେ ବୁଡ଼ି ରହିଲେ । ତାଙ୍କ ପାଖକୁ କେହି କେବେ ବି ଆସିବାର ଜଣା ନ ଥିଲା । କେବଳ କିଛି ଲୋକ ଜାନୁଆରୀ ମାସ ୨୩ ତାରିଖରେ ଏବଂ ଦୁର୍ଗାପୂଜା ସମୟରେ କଲିକତାରୁ ଆସୁଥିଲେ । ଜାନୁଆରୀ ମାସ ୨୩ ତାରିଖଟି କୁଆଡ଼େ ତାଙ୍କର ଜନ୍ମଦିନ ଥିଲା ।

ଘନଘୋର ଅନ୍ଧକାର ମଧ୍ୟରେ ଏସବୁ କାର୍ଯ୍ୟ ଏତେ ସନ୍ତର୍ପଣରେ ଚାଲୁଥିଲା ଯେ ନିଜେ ଘରମାଲିକ କୋଡ଼ିଏ ବର୍ଷ ମଧ୍ୟରେ ଗୁରୁବାବାଙ୍କୁ ଥରେ ହେଲେ ବି ସ୍ପଷ୍ଟ ଭାବରେ ଦେଖିବାର ସୁଯୋଗ ପାଇ ନ ଥିଲେ । କିନ୍ତୁ ପ୍ରତି ମାସ ପହିଲା ତାରିଖରେ ତାଙ୍କ ପାଖକୁ କୌଣସି ନା କୌଣସି ମାଧ୍ୟମରେ ଘରଭଡ଼ା ଟଂକାଟା ଆସିଯାଉଥିଲା ।

ସମୟକ୍ରମେ ଲୋକେ ତାଙ୍କ ବିଷୟରେ ଚୁପ୍‌ଚାପ୍ ଭୁଟ୍‌ଭାଟ୍ ହେବାକୁ ଲାଗିଲେ । ଯେହେତୁ ତାଙ୍କ ନିକଟକୁ କେହି ଯାଉ ନ ଥିଲେ ବା ସେ ନିଜେ ବାହାରକୁ ଆସି ତାଙ୍କ ମୁହଁ ଖୋଲୁ ନ ଥିଲେ, ଲୋକେ ତାଙ୍କୁ 'ଗୁମ୍‌ନାମୀ ବାବା' ବୋଲି କହିବା ଆରମ୍ଭ କରିଦେଲେ । ଆଉ ତାଙ୍କୁ କେନ୍ଦ୍ର କରି ଗୋଛା ଗୋଛା ରହସ୍ୟମୟ କାହାଣୀ ଶୁଣିବାକୁ ମିଳୁଥିଲା । ଅବଶ୍ୟ ଏଥିରୁ କେତେ ସତ ଆଉ କେତେ ମିଛ, ସେକଥା ଠିକ୍ ଭାବେ କେହି ଜାଣି ନ ଥିଲେ ।

ଏହିପରି ସ୍ଥିତି ୧୯୮୫ ମସିହା ସେପ୍ଟେମ୍ବର ୧୬ ତାରିଖ ପର୍ଯ୍ୟନ୍ତ ଲାଗିରହିଲା । ଶୁଣାଗଲା ଯେ ସେହିଦିନ କୁଆଡ଼େ ଗୁମ୍‌ନାମୀ ବାବାଙ୍କ ପରଲୋକ ହୋଇଗଲା ।

ରାତାରାତି ଗଭୀର ଅନ୍ଧକାର ମଧ୍ୟରେ ମାତ୍ର ୧୩ଜଣ ବ୍ୟକ୍ତିଙ୍କ ଉପସ୍ଥିତିରେ ତାଙ୍କର ଶେଷକୃତ୍ୟ ସମ୍ପନ୍ନ ହୋଇଗଲା । ଯେଉଁଠି ତାଙ୍କର ଶେଷକୃତ୍ୟ ସମ୍ପନ୍ନ ହୋଇଥିଲା, ତାକୁ ଲୋକେ 'ଗୁପ୍ତଘାଟ' ବୋଲି କହିଥାଆନ୍ତି । ଘାଟଟି ଅଯୋଧ୍ୟା ନିକଟରେ ପ୍ରବାହିତ ହେଉଥିବା ପବିତ୍ର ସରଯୂନଦୀ ତୀରରେ ଅବସ୍ଥିତ, ଯେଉଁଠି ଦିନେ ଭଗବାନ ଶ୍ରୀରାମଚନ୍ଦ୍ର ତାଙ୍କ ମର୍ତ୍ତ୍ୟଲୀଳା ସମାପ୍ତ କରି ଦେହତ୍ୟାଗ କରିଥିଲେ ।

ପରେ ପରେ ଘଟଣାଟି ପ୍ରଘଟ ହୋଇଗଲା; ଆଉ କିଛି ଗୁପ୍ତ ରହିପାରିଲା ନାହିଁ । ରାଜନେତା, ସାମ୍ବାଦିକ, ପ୍ରଶାସକ, ଛାତ୍ର, ଅଧ୍ୟାପକ, ଐତିହାସିକ, ଗବେଷକ, ପୁଲିସ୍ ଅଧିକାରୀ ତଥା ସମାଜର ପ୍ରତ୍ୟେକ ବର୍ଗର ବ୍ୟକ୍ତି ଗୁରୁଦତ୍ତ ସିଂଙ୍କ ଖମାର ଘରକୁ ମାଡ଼ିଆସିଲେ । ତାଙ୍କୁ ଗୋଛା ଗୋଛା ପ୍ରଶ୍ନ କରି ଅସ୍ତବ୍ୟସ୍ତ କରିପକାଇଲେ । ହେଲେ ସେ ବା ତାଙ୍କ ବିଷୟରେ କ'ଣ ଜାଣିଛନ୍ତି ଯେ କହିପାରିବେ ?

ପରେ ଜଣାଗଲା ଯେ ଗୁମ୍‌ନାମୀ ବାବା ଆଉ କେହି ନୁହନ୍ତି, ସେ ହେଉଛନ୍ତି ଛଦ୍ମବେଶରେ ଥିବା




ସୁଭାଷଚନ୍ଦ୍ର ବୋଷ    ଗୁମ୍‌ନାମୀ ବାବା

ନେତାଜୀ ସୁଭାଷଚନ୍ଦ୍ର ବୋଷ । କୋଟିକୋଟି ଭାରତୀୟଙ୍କ ହୃଦୟକନ୍ଦର ମଧ୍ୟରେ ଆସନ ପାତିଥିବା ଭାରତମାତାର ଅନ୍ୟତମ ଯୋଗ୍ୟ ସନ୍ତାନ ।

ତେବେ ଯେଉଁ ନେତାଜୀଙ୍କୁ ଭାରତୀୟ ଜନତା ମୁଣ୍ଡରେ ମୁଣ୍ଡାଇ ଚାଲିଥିଲେ, ତାଙ୍କ ନାମକୁ ଏକପ୍ରକାର ପ୍ରାତଃସ୍ମରଣୀୟ କରିଦେଇଥିଲେ । ଏପରି ଏକ ରହସ୍ୟ-ରୋମାଞ୍ଚଭରା ପରିସ୍ଥିତିରେ ଅତି ଅଜଣା-ଅଶୁଣା ଭାବରେ ସେ ଆତ୍ମଗୋପନ କରି ରହିବାର କାରଣ କ'ଣ ?

ଏହି ପ୍ରଶ୍ନର ଉତ୍ତର ପାଇବାକୁ ହେଲେ ଆମକୁ ୭୦-୭୫ ବର୍ଷ ତଳର ବିଶ୍ୱ ଇତିହାସ ଘାଣ୍ଟିବାକୁ ପଡ଼ିବ । ୧୯୩୯ ମସିହା ସେପ୍ଟେମ୍ବର ମାସରେ ଜର୍ମାନୀ ଇଉରାପ ମହାଦେଶର ପୋଲାଣ୍ଡକୁ ଜୋର୍‌ଜବରଦସ୍ତ ମାଡ଼ି ବସିଲା । ଏହିଠାରୁ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହୋଇଗଲା ।

୧୯୪୫ ମସିହା ଅଗଷ୍ଟ ୯ ତାରିଖରେ ଜାପାନର ଆତ୍ମସମର୍ପଣ ସହିତ ଏହାର ଯବନିକା ଟଣାହୋଇଗଲା । ଏହି ମହାଯୁଦ୍ଧ ଅକ୍ଷଶକ୍ତି(Axis Powers) ଏବଂ ମିତ୍ରଶକ୍ତି(Allied Powers) ମଧ୍ୟରେ ସଂଘଟିତ ହୋଇଥିଲା । ଅକ୍ଷଶକ୍ତିର ମୁଖ୍ୟ ଖେଳାଳିମାନେ ହେଲେ ଜର୍ମାନୀ, ଇଟାଲୀ, ଜାପାନ୍, ହଙ୍ଗେରୀ, ରୋମାନିଆ, ଥାଇଲାଣ୍ଡ, ଇରାକ୍ ପ୍ରଭୃତି ଦେଶ । ଏହି ଶକ୍ତିର ନେତୃତ୍ୱ ଥିଲା ଜର୍ମାନୀର ହିଟ୍‌ଲର୍ ଏବଂ ଇଟାଲୀର ମହାନାୟକ ମୁସୋଲିନୀ ପ୍ରଭୃତି ନେତାମାନଙ୍କ ହାତରେ ।

ଅପରପକ୍ଷରେ ମିତ୍ରଶକ୍ତିରେ ଥିଲେ ଆମେରିକା, ଅଷ୍ଟ୍ରେଲିଆ, ଫ୍ରାନସ୍, ବ୍ରିଟେନ୍, କାନାଡ଼ା, ରୁଷିଆ, ଚୀନ୍, ନ୍ୟୁଜିଲାଣ୍ଡ ପ୍ରଭୃତି ଦେଶ । ମିତ୍ରଶକ୍ତିର କମାଣ୍ଡ୍ ସମ୍ଭାଳିଥିଲେ ଆମେରିକାର ଜେନେରାଲ ଆଇଜେନ୍ ହାୱାର୍, ଯେ କି ପରବର୍ତ୍ତୀ ସମୟରେ ଦୁଇଦୁଇଥର ପାଇଁ ଆମେରିକାର ରାଷ୍ଟ୍ରପତି ନିର୍ବାଚିତ ହୋଇଥିଲେ ।

ପ୍ରକାଶଥାଉ କି ଆମେରିକା ପ୍ରଥମେ ଯୁଦ୍ଧରେ ପଶି ନ ଥିଲା; କିନ୍ତୁ ୧୯୪୧ ମସିହା ଡିସେମ୍ବର ମାସ ୭ ତାରିଖରେ ପ୍ରଶାନ୍ତ ମହାସାଗର କୂଳରେ ଅବସ୍ଥିତ ଆମେରିକାର ମୁଖ୍ୟ ନୌଘାଟି ପର୍ଲ ହାର୍‌ବର୍ ଉପରେ ଅତର୍କିତ ଭାବେ ଜାପାନ୍ ବୋମାମାଡ଼ କରି ନୌଘାଟୀଟିକୁ ଧ୍ୱଂସ କରିଦେଲା । ଆମେରିକା ଆଉ ଥୟ ଧରି ରହିପାରିଲା ନାହିଁ । ପୂରାଦମ୍‌ରେ ଯୁଦ୍ଧରେ ପଶିଗଲା ।

ଯୁଦ୍ଧ ଇଉରୋପ ମହାଦେଶରୁ ଆରମ୍ଭ ହୋଇଥିଲେ ମଧ୍ୟ ଏହା କେବଳ ଇଉରୋପରେ ସୀମିତ ନ ଥିଲା । ଏସିଆ, ଆଫ୍ରିକା, ମଧ୍ୟପ୍ରାଚ୍ୟ, ପ୍ରଶାନ୍ତ ମହାସାଗର, ଭାରତ ମହାସାଗର, ଚୀନ୍ ସାଗର, ଭୂମଧ୍ୟ ସାଗର, ଜାପାନ୍ ସାଗର ପ୍ରଭୃତି ଅଞ୍ଚଳକୁ ବ୍ୟାପିଯାଇଥିଲା । ଯୁଦ୍ଧରେ ପଶି ଯାଇଥିବା ଦେଶଗୁଡ଼ିକର ଉପନିବେଶ-ଗୁଡ଼ିକରେ ମଧ୍ୟ ଯୁଦ୍ଧ ଲାଗିଯାଇଥିଲା ।

ଯୁଦ୍ଧର ୬ ବର୍ଷର ଅବଧି ମଧ୍ୟରେ ଉଭୟ ପକ୍ଷର ଅସଂଖ୍ୟ ସାମରିକ ତଥା ବେସାମରିକ ବ୍ୟକ୍ତି ପ୍ରାଣ ହରାଇଥିଲେ । ବିପୁଳ ପରିମାଣର ଧନସମ୍ପତ୍ତି ନଷ୍ଟଭ୍ରଷ୍ଟ ହୋଇଗଲା । ରାସ୍ତାଘାଟ, କୋଠାବାଡ଼ି, ବନ୍ଧବାଡ଼, ବନ୍ଦରଘାଟି, କଳକାରଖାନା, ସ୍କୁଲ୍-କଲେଜ୍, ଡାକ୍ତରଖାନା ଉଭୟ ପକ୍ଷର ବୋମାମାଡ଼ରେ ଜଳିପୋଡ଼ି ପାଉଁଶ ହୋଇଗଲା । ଲକ୍ଷ ଲକ୍ଷ ନିରୀହ ଜନତାଙ୍କୁ ସହଜରେ ଏବଂ ଆଖି ପିଛୁଳାକେ ମାରି ପକାଇବା ପାଇଁ ବହୁ ମାରାତ୍ମକ ଅସ୍ତ୍ରଶସ୍ତ୍ର ପ୍ରୟୋଗ ହେଲା । ବିଭିନ୍ନ ରଣକ୍ଷେତ୍ରରେ ରକ୍ତର ସୁଅ ଛୁଟିଲା ।

ସେତେବେଳେ ଭାରତରେ ବ୍ରିଟିଶ୍ ଶାସନ ଚାଲୁଥାଏ । ବ୍ରିଟିଶ୍‌ମାନଙ୍କୁ ଦେଶରୁ ହଟାଇବା ପାଇଁ ସ୍ୱାଧୀନତା ଆନ୍ଦୋଳନ ଚାଲୁଥାଏ । ହିମାଳୟଠାରୁ କୁମାରିକା ଯାଏଁ ଭାରତୀୟ ଜନତା ସ୍ୱାଧୀନତା

ଆନ୍ଦୋଳନରେ ମାତିଯାଇଥାଅନ୍ତି । ଏହି ଆନ୍ଦୋଳନ ମୁଖ୍ୟତଃ ଅହିଂସ ଉପାୟରେ ଚାଲୁଥାଏ; ଯଦିଓ ମଝିରେ ମଝିରେ କାଁ ଭାଁ କେଉଠି କେମିତି ପୋଡ଼ାଜଳା, ବୋମାମାଡ଼, ହିଂସାକାଣ୍ଡ ବି ଜାରି ରହିଥାଏ ।

ଆନ୍ଦୋଳନର ପୁରୋଭାଗରେ ଥାଆନ୍ତି ମହାତ୍ମା ଗାନ୍ଧୀ, ଜବାହରଲାଲ୍ ନେହରୁ, ପଟେଲ୍, ଆଜାଦ୍, ଜିନ୍ନା, ଅବଦୁଲ୍ ଗଫର ଖାଁ, ନେତାଜୀ ସୁଭାଷ ପ୍ରଭୃତି ନେତାମାନେ । ନେତାଜୀ କିନ୍ତୁ ଅହିଂସ ଆନ୍ଦୋଳନକୁ ପସନ୍ଦ କରିପାରୁ ନ ଥାନ୍ତି । ସେ ଚାହୁଁଥାଆନ୍ତି ସଶସ୍ତ୍ର ସଂଗ୍ରାମ ।

ଏହି ଚିନ୍ତାଧାରାକୁ କେନ୍ଦ୍ର କରି ଭାରତୀୟ ଜାତୀୟ କଂଗ୍ରେସ ବସ୍ତୁତଃ ଦୁଇଭାଗରେ ବିଭକ୍ତ ହୋଇଯାଇଥାଏ– 'ଚରମପନ୍ଥୀ' ଏବଂ 'ନରମପନ୍ଥୀ' ଗୋଷ୍ଠୀ ହିସାବରେ । ଗାନ୍ଧୀ–ନେହେରୁ–ପଟେଲ–ଆଜାଦ ପ୍ରଭୃତି ନରମପନ୍ଥୀ ଗୋଷ୍ଠୀର ପ୍ରବକ୍ତା ସାଜିଥିବାବେଳେ ନେତାଜୀ ଥାଆନ୍ତି ଚରମପନ୍ଥୀ ଗୋଷ୍ଠୀର ମୁଖ୍ୟ ପ୍ରବକ୍ତା । ଉଭୟ ଗୋଷ୍ଠୀର ଲକ୍ଷ୍ୟ ଏକ ଥିବାବେଳେ, ପନ୍ଥା କିନ୍ତୁ ଥାଏ ଭିନ୍ନ ଭିନ୍ନ ।

ନେତାଜୀଙ୍କ ଦୂରଦୃଷ୍ଟି ତାଙ୍କୁ ସୂଚନା ଦେଲା ଯେ ବାହାର ଦେଶର ବିନା ସାହାଯ୍ୟରେ ବ୍ରିଟିଶକେଶରୀ ସହିତ ଲଢ଼ାଇ କରି ସ୍ୱାଧୀନତା ହାସଲ କରିବା ଏକପ୍ରକାର ଅସମ୍ଭବ ।

ଏହି ମହାଯୁଦ୍ଧ ତାଙ୍କ ପାଇଁ ଏକ ଅପୂର୍ବ ସୁଯୋଗ ବୋଲି ସେ ବିଚାର କଲେ । ମିତ୍ରଶକ୍ତିରେ ସାମିଲ ହୋଇଥିବା ଇଂଲଣ୍ଡ ବିରୋଧରେ ଲଢ଼ାଇ କରୁଥିବା ଜର୍ମାନୀ, ଇଟାଲୀ, ଜାପାନ ପ୍ରଭୃତି ଦେଶ ଆଡ଼କୁ ସେ ଦୃଷ୍ଟି ପକାଇଲେ ।

ଏଥି ମଧ୍ୟରେ ମହାଯୁଦ୍ଧ ଚାଲୁଥିବା ବିଭିନ୍ନ ରଣକ୍ଷେତ୍ରରେ ମିତ୍ରଶକ୍ତିର ସୈନ୍ୟମାନେ ଅତ୍ୟନ୍ତ ଦୟନୀୟ ଅବସ୍ଥା ଭୋଗୁଥିବାର ଲୋମହର୍ଷକ ଖବରମାନ ଆସୁଥାଏ । ନେତାଜୀ ବିଶେଷ ଉତ୍ସାହିତ ହୋଇପଡୁଥାଆନ୍ତି । ତେଣୁ ଯେ କୌଣସି ଉପାୟରେ ଜର୍ମାନୀ, ଇଟାଲୀ, ଜାପାନ ପ୍ରଭୃତି ଦେଶଠାରୁ ଭାରତ ସ୍ୱାଧୀନତା ପାଇଁ ସାହାଯ୍ୟ ଭିକ୍ଷା କରିବା ଲାଗି ସେ ଦୃଢ଼ ନିଷ୍ପତ୍ତି ନେଇ ସାରିଥାଆନ୍ତି ।

ବ୍ରିଟିଶ ସରକାର ତାଙ୍କର ଏହି ଚିନ୍ତାଧାରାର ସୂଚନା ପାଇ କଲିକତାର ୧ ନମ୍ବର ଉଡ୍‌ବର୍ଣ୍ଣ ପାର୍କରେ ଥିବା ତାଙ୍କର ପୈତୃକ ବାସଭବନରେ ତାଙ୍କୁ ନଜରବନ୍ଦୀ କରି ରଖିଦେଲେ । ଦିନରାତି ତାଙ୍କୁ ବ୍ରିଟିଶ ଗୁଇନ୍ଦାମାନେ ଜଗି ରହିଲେ । ବ୍ରିଟିଶ ସରକାର ଗାନ୍ଧୀ, ନେହେରୁ, ଆଜାଦ, ପଟେଲଙ୍କ ଅପେକ୍ଷା ଭାରତର ବ୍ରିଟିଶ ଶାସନ ପାଇଁ ନେତାଜୀଙ୍କୁ ଅତ୍ୟନ୍ତ ବିପଜ୍ଜନକ ବିଚାର କରୁଥିବାରୁ ତାଙ୍କ ପାଇଁ ଏପରି ବ୍ୟବସ୍ଥା କରାଯାଇଥିଲା ।

ସୁଭାଷ କିନ୍ତୁ ଏକ ଭିନ୍ନ ଉପାଦାନରେ ଗଢ଼ା ହୋଇଥିଲେ । ନଜରବନ୍ଦୀ ଅବସ୍ଥାରୁ ବ୍ରିଟିଶ ସରକାରଙ୍କୁ ଭଲ ରକମ ଚକ୍‌ମା ଦେଖାଇ ଏକ ଆଫଗାନୀ ମୁସଲମାନ ବେଶରେ ସୁଭାଷ ଭାରତ ଛାଡ଼ି ବାହାରିଆସିଲେ ।

(କ୍ରମଶଃ)

*ମଣ୍ଡାସାହି, ଜଗତସିଂହପୁର–୭୫୪୧୧୪*

---

୭୦
୬
୧୦
୩୦
ଲିଭିଯାଇଥିବା ସଂଖ୍ୟାଟି କେତେ ?
?
୪
୯
୪୫

(ଉତ୍ତର ୨୩ ପୃଷ୍ଠାରେ)

# ବୁଦ୍ଧି ଯାହାର ବଳ ତାହାର

ଶାନ୍ତିଲତା ଦାସ

ତେନାଲିରମଣ ଜଣେ ବୁଦ୍ଧିମାନ ବ୍ୟକ୍ତି ଥିଲେ । ଆକବରଙ୍କ ରାଜସଭାରେ ବୀରବଲ୍ ଥିଲେ ସବୁଠୁଁ ବୁଦ୍ଧିମାନ୍ । ସେହିପରି ରାଜା କୃଷ୍ଣଦେବ ରାୟଙ୍କର ପ୍ରିୟ ଥିଲେ ତେନାଲି ।

ସେତେବେଳେ ରାମଶାସ୍ତ୍ରୀ ବୋଲି ଜଣେ ବିଦ୍ୱାନ୍ ବ୍ୟକ୍ତି ଜ୍ଞାନ, ବୁଦ୍ଧି, ତର୍କ ପ୍ରତିଯୋଗିତାରେ ବିଶେଷ ପାରଙ୍ଗମ ଥିଲେ । ବିଜୟନଗରର ରାଜା ଶ୍ରୀକୃଷ୍ଣ ଦେବରାୟଙ୍କ ଦରବାରରେ ଅଷ୍ଟରତ୍ନ ଥିଲେ । ସେମାନଙ୍କ ସହ ଜ୍ଞାନ, ବୁଦ୍ଧି ଓ ତର୍କର ପ୍ରତିଯୋଗିତା କରିବାକୁ ବିଭିନ୍ନ ପ୍ରଶ୍ନ ମାଧ୍ୟମରେ ତାଙ୍କର ଏକ ଗୁପ୍ତ ଇଚ୍ଛା ଥିଲା । ସେ ଏକଥା ରାଜାଙ୍କୁ ଜଣାଇଲେ । ରାଜା ଜ୍ଞାନର ପ୍ରତିଯୋଗିତା ପାଇଁ ସମସ୍ତ ବ୍ୟବସ୍ଥା କଲେ ।

ତା'ପରଦିନ ରାମଶାସ୍ତ୍ରୀ ରାଜଦରବାରରେ ଆସି ହାଜର; କିନ୍ତୁ ତେନାଲି ଆସିନଥିଲେ । ତର୍କ, ଯୁକ୍ତି, ବ୍ୟାକରଣ ସବୁ କ୍ଷେତ୍ରରେ ରାମଶାସ୍ତ୍ରଙ୍କର ପାଣ୍ଡିତ୍ୟ ଶୁଣି ସମସ୍ତେ ଆନନ୍ଦିତ ହେଲେ । ତେନାଲି ଆସି ପହଞ୍ଚିଲେ । ସେ ଥଟ୍ଟାକରି କହିଲେ, "ରାମଶାସ୍ତ୍ରୀ ! ଆପଣ ଯୁକ୍ତିତର୍କରେ ପାରଙ୍ଗମ କି ? ଆପଣ ବହୁତ ପାରିବାର ବ୍ୟକ୍ତି– କେଉଁ କ୍ଷେତ୍ରରେ ଆପଣ ପାରଙ୍ଗମ, ଆମେ ଜାଣିବାକୁ ଆପଣଙ୍କୁ ଅନୁରୋଧ କରୁଛୁ ।"

ରାମଶାସ୍ତ୍ରୀ ଉତ୍ତରଦେଲେ,"ତର୍କଶାସ୍ତ୍ର, ବ୍ୟାକରଣ ।" ତେନାଲି ପ୍ରଶ୍ନକଲେ, "ମୋର ବ୍ୟାକରଣରେ ସନ୍ଦେହ ଅଛି, ଆପଣ କ'ଣ ଦୂର କରିପାରିବେ ?" ଏକଥା ଶୁଣି ରାମଶାସ୍ତ୍ରୀ ଠୋ ଠୋ ହସିଲେ । ଗର୍ବର ସହ କହିଲେ, "ନିଶ୍ଚୟ ପାରିବି ।" ''ତ୍ରିୟମ୍ବକ ଶବ୍ଦ ପାଇଁ ବ୍ୟାକରଣରେ କେଉଁ ନିୟମ ଅନୁସରଣ କରିବାକୁ ପଡ଼ିବ ?" ପଚାରିଲେ ତେନାଲି । ରାମଶାସ୍ତ୍ରୀ ଉତ୍ତର ଦେଲେ, "ଏ ତ ବହୁତ ସାଧାରଣ କଥା । ଆପଣ କଣ ଜାଣନ୍ତିନି ତ୍ରି+ଅମ୍ବକ=ତ୍ରିୟମ୍ବକ । ଆପଣ ଏତେ ବଡ଼ ପଣ୍ଡିତ, ଏହି ସାଧାରଣ କଥା ଜାଣନ୍ତି ନାହିଁ ?"

ଅନ୍ୟ ଏକ ତର୍କ ପ୍ରତିଯୋଗିତା ପାଇଁ ତେନାଲି ପ୍ରସ୍ତୁତ ହେଲେ । ଆପଣଙ୍କ ସଂଜ୍ଞା ନିରୂପଣ ଓ ଆପଣଙ୍କ ଜ୍ଞାନ ଆପଣଙ୍କର ଏପରି ପରିଚୟ ଦିଏ ଯେ– ଆପଣଙ୍କ ପାଣ୍ଡିତ୍ୟ ଶୁଖିଲା କାଠ ପରି– ଏଭଳି ଉଭୟଙ୍କ ଭିତରେ କଥା କଟାକଟି, ଯୁକ୍ତିତର୍କ ଚାଲିଲା । ଏସବୁ ଦେଖି ରାଜା ପ୍ରତିଯୋଗିତା କାର୍ଯ୍ୟକ୍ରମକୁ ପରଦିନ ପାଇଁ ସ୍ଥଗିତ ରଖିଲେ ।

ଏ ଖବର ବିଜୁଳି ଭଳି ଚାରିଆଡ଼େ ଖେଳିଗଲା । ବହୁ ବିଦ୍ୱାନ୍ ପଣ୍ଡିତଙ୍କର ରାଜଦରବାରକୁ ସୁଅ ଛୁଟିଲା । ରାଜା ସିଂହାସନରେ ଆସୀନ । ସମସ୍ତେ ରାଜାଙ୍କୁ ସମ୍ମାନ ପ୍ରଦର୍ଶନ କରି ଆସନ ଗ୍ରହଣ କଲେ । ଠିକ୍ ଏହି ସମୟରେ ପ୍ରବେଶ କଲେ ତେନାଲି ।

ସବୁ କିଛି ଠିକ୍ ଚାଲିଲା । ବିତର୍କ ଚାଲୁ କରିବା ପାଇଁ ରାଜା ଇସାରା ଦେଲେ । ରାମଶାସ୍ତ୍ରୀ ଆରମ୍ଭ କଲେ, "ତେନାଲି ! ଆପଣ ଧରିଥିବା ବହିଟିର ନାମ ମୁଁ ଜାଣିପାରିବି ?" ତେନାଲି ଅକୁଣ୍ଠ ଚିତ୍ତରେ ଉତ୍ତରଦେଲେ, "ତିଳକାଷ୍ଠ ମହିଷ ବନ୍ଧନମ୍"– ଏହା କେତେଗୁଡ଼ିଏ ସାଧାରଣ ପୁସ୍ତକର ରତ୍ନଭଣ୍ଡାର । କିଛି ବୁଝି ନ ପାରି ରାମଶାସ୍ତ୍ରୀ ଆଗକୁ ଝୁଙ୍କିପଡ଼ିଲେ । ପ୍ରଶ୍ନ କଲେ, "ତିଳକାଷ୍ଠ ମହିଷ ବନ୍ଧନମ୍, ଏହା କ'ଣ ?"



ତେନାଲି ଆଶ୍ଚର୍ଯ୍ୟ ହୋଇ କହିଲେ, "ଏ ବହି କ'ଣ ଆପଣ ଆଗରୁ ପଢ଼ିନାହାନ୍ତି ? ବିତର୍କ ଆଲୋଚନା ପାଇଁ ଏ ବହିଟି ଅତ୍ୟନ୍ତ ଉପଯୋଗୀ, ଏହା ଭାବି ଏ ବହିଟି ମୁଁ ସାଙ୍ଗରେ ନେଇଆସିଛି ।"

ରାମଶାସ୍ତ୍ରୀଙ୍କୁ ଚତୁର୍ଦ୍ଦିଗ ଅନ୍ଧାର ଦେଖାଗଲା । କ'ଣ କରିବେ କିଛି ଜାଣିପାରିଲେନି । ସେ ଜାଣି ନ ଥିଲେ ଏମିତି ଏକ ବହି ଅଛି । ବହିରୁ ଯଦି ଉଦ୍ଧାର କରି ଯୁକ୍ତି ଉପସ୍ଥାପନ କରନ୍ତି, ସେ ନିଶ୍ଚୟ ହାରିଯିବେ । ଲୋକେ ହସିବେ । ରାଜସଭାରେ ବା କି ପ୍ରକାର ସମ୍ମାନିତ ହେବେ ? କିଛି ସମୟ ଚିନ୍ତା କରି ରାମଶାସ୍ତ୍ରୀ ଗୋଟିଏ ଉପାୟ ସ୍ଥିର କଲେ । ତେନାଲି ବହିଟିଏ ଆଣିଛନ୍ତି । ତେଣୁ ସେ ମଧ୍ୟ ତାଙ୍କ ଯୁକ୍ତି ଉପସ୍ଥାପିତ କରିବା ପାଇଁ ମାନ୍ୟତାପ୍ରାପ୍ତ ପୁସ୍ତକ ଆଣିବା ଉଚିତ । ସେ ସେହି ବହିଟି ଆଣିବାକୁ ରାଜାଙ୍କର ଅନୁମତି ମାଗିଲେ । ରାଜାଙ୍କ ଅନୁମତି ମିଳିଗଲା । ସଙ୍ଗେ ସଙ୍ଗେ ଦ୍ରୁତଗାମୀ ପବନ ଭଳି ରାମଶାସ୍ତ୍ରୀ ସଭା ଛାଡ଼ି ଚାଲିଗଲେ । ସମସ୍ତେ ଅପେକ୍ଷାରତ । ସମୟ ଗଡ଼ିଚାଲିଲା । ରାମଶାସ୍ତ୍ରୀଙ୍କର ଦର୍ଶନ ନାହିଁ । ବାଧ୍ୟ ହୋଇ ପରବର୍ତ୍ତୀ ଦିନକୁ ଅଧିବେଶନ ସ୍ଥଗିତ ରଖାଗଲା । ରାଜା ତେନାଲିଙ୍କୁ କହିଲେ, "ପ୍ରକୃତରେ ଏହା ଗୋଟିଏ ଚମତ୍କାର କାର୍ଯ୍ୟ ଥିଲା ।" ରାଜା କୃଷ୍ଣଦେବ ରାୟ ଉତ୍କଣ୍ଠାର ସହିତ କହିଲେ, "ତେନାଲି ଆପଣ ଯେଉଁ ବହିଟି ସାଙ୍ଗରେ ଆଣିଛନ୍ତି, ସେଥିରୁ କିଛି ଭଲ ଭଲ ପଂକ୍ତି ଆବୃତ୍ତି କରନ୍ତୁ ।" ଡେରି ନ କରି ସବୁକଥା ଖୋଲିଦେଇ ତେନାଲି କହିଲେ, "ସମସ୍ତଙ୍କୁ ସମ୍ମାନର ସହ କହିବାକୁ ଚାହେଁ ଯେ ଆପଣ ମଧ୍ୟ ଏ ଗଣ୍ଠିଲିକୁ ବହି ବୋଲି ଭାବିଲେ କିପରି ?" ଏହା କହି ସମସ୍ତଙ୍କ ଆଗରେ ଗଣ୍ଠିଲି ଖୋଲିଦେଲେ । ତା'ଭିତରେ ମହିଷ ପାଇଁ କିଛି କଅଁଳ ଘାସ ବନ୍ଧା ହୋଇଥିଲା । ନୁଆ ସୁନ୍ଦର କନାରେ ଗଣ୍ଠି ପକାଇ ଯତ୍ନରେ ରଖାଯାଇଥିଲା । ସମସ୍ତେ ଜୋର୍‌ରେ ଠୋ ଠୋ ହୋଇ ହସିବାରେ ଲାଗିଲେ । ତେନାଲି ସମସ୍ତଙ୍କୁ ବୁଝାଇଦେଲେ, "ତିଳକାଷ୍ଠ ଅର୍ଥ ତିଳଗୁଳ୍ମ, ଏବଂ ମହିଷ ବନ୍ଧନମ୍ ଅର୍ଥ ହେଉଛି ମହିଷ ବାନ୍ଧିବା ପାଇଁ ବ୍ୟବହୃତ ଦଉଡ଼ି ।"

ଏହି ନାମ ଶୁଣି ରାମଶାସ୍ତ୍ରୀ ଦ୍ୱନ୍ଦ୍ୱରେ ପଡ଼ିଗଲେ । ଅର୍ଥ ବୁଝିବାକୁ ଟିକିଏ ହେଲେ ଚେଷ୍ଟା କଲେନି । ଭୟରେ ସହର ଛାଡ଼ି ପଳେଇଲେ । ରାଜା କୃଷ୍ଣଦେବ ରାୟ ତେନାଲିଙ୍କର ବୁଦ୍ଧିକୁ ପ୍ରଶଂସା କଲେ । ତାଙ୍କୁ ଭଲ ରକମର ସମ୍ମାନିତ କଲେ । ପୁଣିଥରେ ତେନାଲି ବୁଦ୍ଧିର ଯୁଦ୍ଧରେ ଜୟଲାଭ କଲେ । ବୁଦ୍ଧି ଯାହାର ବଳ ତାହାର ।

*କ୍ୱାର୍ଟର ନଂ ବି- ୪୭୪, ଏନ୍.ଟି.ପି.ସି, ଟି.ଏସ୍.ଟି.ପି.ପି, କଣିହା, ଦୀପଶିଖା, ଅନୁଗୁଳ*

---

ଉତ୍ତର– କୋକିଶିଆଳ

# ଅନ୍ଧ ବିଶ୍ୱାସ ମୋ ବଦଳିଲା

ଡକ୍ଟର ସୁରେନ୍ଦ୍ରନାଥ ତ୍ରିପାଠୀ

ବାହାରିଲି ଦିନେ ପରୀକ୍ଷା ଦେବାକୁ
ଘରୁ ହୋଇ ପରା ତରତର,
ଚାକିରିଟା ହେବ ବୟସ ଗଡୁଛି
ଉତ୍ତୀର୍ଣ୍ଣ ହୋଇଲେ ଏଇଥର ।
ମାଆ କରିଛନ୍ତି କେତେ ଉପବାସ–
ବ୍ରତ ପାଣିଲାଗି ବାରବାର,
ପୂର୍ଣ୍ଣକୁମ୍ଭ ଦେଖି ଯାଇଅଛି କେତେ
ଦଧିମାଛ କରି ଅନୁକୂଳ ।
ସବୁଥର ପୁଣି ଫେଏଲେ ମାରିଛି
ଏଥର ପାଆସ୍ କରିଯିବି
ଏଥର ନ ହେଲେ ଆଉ ପରୀକ୍ଷାରେ
ବସିବା ସୁଯୋଗ ହରାଇବି ।
ବାଇକ୍‌ରେ ବସି ମନ ଆନନ୍ଦରେ
ଚାଲିଗଲି ହୋଇ ଏକମୁଖ,
ବାଟ କାଟିଗଲା ସାମ୍ନାରେ ମୋହର
ତୀବ୍ର ବେଗରେ ପୁଷି ଏକ ।
ମା' କହିଥିଲେ ଅଟକି ଯିବାକୁ
ପଛୁ ଯଦି କେହି ଯିବ ଚାଲି



ତାହା ହେଲେ ଆଗକୁ ବଢ଼ିବୁ ପୁଅରେ
ନ ହେଲେ ରହିବୁ ସେହିଭଳି ।
ବଡ଼ ବ୍ୟସ୍ତ ହୋଇ ରହିଲି ଘଡ଼ିଏ
ପଛରୁ କାହାର ଦେଖା ନାହିଁ,
ନିର୍ଜନ ରାସ୍ତାରେ ବଡ଼ି ସକାଳରୁ
କିଏ ବା ଆସିବ କାହା ପାଇଁ ?
ଏଣେ ଗଡୁଅଛି ସମୟ ମୋହର
ଯିବାକୁ ଅଛିଟି ବହୁଦୂର,
ପରୀକ୍ଷା ଦେବାର ବେଳ ଆସୁଅଛି
ଯିବା ପାଇଁ ହେଲି ତରବର ।
ମନରେ ଭାବିଲି ଏ ଅନ୍ଧ ବିଶ୍ୱାସ
ବିରାଡ଼ିଟା ଗଲେ ଏବେ ଗଲା
ଏ ଜୀବ ସହିତ କି ବିପଦ ଅଛି
ଆଗକୁ ଏବେ ମୁଁ ଯିବି ଭଲା ।
ଏକଥାକୁ ଭାବି ଆଗେଇ ମୁଁ ଗଲି
ନିରାପଦେ କେନ୍ଦ୍ରେ ପହଞ୍ଚିଲି,
ଯଥାସମୟରେ ପରୀକ୍ଷା ଲେଖିଣ
ସର୍ବୋଚ୍ଚ ନମ୍ବର ମୁଁ ରଖିଲି ।
ଏହି ଦୁନିଆରେ ସବୁ ଜୀବ ମଧ୍ୟେ
ରହିଛନ୍ତି ପରା ଭଗବାନ
ସେହି ପରମାତ୍ମା ପୂରିଣ ଅଛନ୍ତି
ନୁହନ୍ତି କେଉଁଠି ବଡ଼ସାନ ।
ଅନ୍ଧବିଶ୍ୱାସର ବଶବର୍ତ୍ତୀ ହୋଇ
ରହିଥାନ୍ତି ଯେବେ ହୋଇ ଠିଆ,
ପରୀକ୍ଷାଟି ଦେଇ ପାରି ନ ଥାନ୍ତି ମୁଁ,
ହୋଇଯାଇଥାନ୍ତି ବେକାରିଆ ।
ସେହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଣ
ହେଲି ଭଲ ଏକ ଚାକିରିଆ,
ଅନ୍ଧ ବିଶ୍ୱାସେ ବଶ ହୁଅନାହିଁ
ଖାଲି ଭାଇ କର୍ମ କରିଯାଆ ।

*ଜବାହର ନବୋଦୟ ବିଦ୍ୟାଳୟ, ଦେବଗଡ଼- ୭୬୮୧୦୮*




ସିରିଆ ଲଢ଼େଇରେ ମସ୍‌ଗୁଲ୍ । ସେଠି ଚାଲିଛି ଗୃହଯୁଦ୍ଧ ଆଉ ସେ ଦେଶରୁ ଶହ ଶହ ମଣିଷ ପଳାଉଛନ୍ତି ଅନ୍ୟ ଦେଶକୁ- ବିଶେଷ କରି ୟୁରୋପ୍‌କୁ । ସେମିତି ଆସିଥିଲା ଟିକି ଆଲ୍ୟାନ୍ । ବାପାମା' ଆଉ ଅନେକଙ୍କ ସହ । ନୌକାରେ ଗଲାବେଳେ ସମୁଦ୍ରରେ ବୁଡିଗଲା ନୌକାଟି । ପ୍ରାୟ ସବୁଲୋକ ବୁଡ଼ିଗଲେ । ଆଲ୍ୟାନର ଶବଟି ଭାସିଆସିଥିଲା ସେଇ କୂଳକୁ– ଯେଉଁଠୁ ତା'ର ଯାତ୍ରା ଆରମ୍ଭ ହୋଇଥିଲା । ସମୁଦ୍ରର ନିର୍ଜନ ବେଳାଭୂଇଁରେ ତିନି ବର୍ଷର ପିଲାଟି । ପିନ୍ଧିଥିଲା ଟି-ସାର୍ଟ ଲାଲ୍ ରଂଗର । ସମୁଦ୍ରର ନୀଳଲହରୀ ତାକୁ ଛୁଇଁ ଛୁଇଁ ଯାଉଥାଏ ।

କ'ଣ ଦୋଷ କରିଥିଲା ଏଇ ନିର୍ଦୋଷ ଶିଶୁ! ଜୀବନ ବଞ୍ଚାଇବା ଲାଗି ସେ ସିରିଆରୁ ବାପା ସଂଗେ ଯାଇଥିଲା । ଆଉ ଟିଭି, ଖବରକାଗଜରେ ବାହାରିଲା ସେଇ ଚିତ୍ର । ଫଟୋଗ୍ରାଫର ନୀଲୁଫର୍ ଡେମିର୍ ସେଇ ନୀରବ ଦେହଟିର କାନ୍ଦଣା ଶୁଣିଥିଲେ । ଇଣ୍ଟରନେଟ୍‌ରେ ଭାସିଉଠିଲା ଆଲ୍ୟାନ୍ କୁର୍ଦିର ଚିତ୍ର । ୟୁରୋପ୍, ଆମେରିକା, ସାରା ପୃଥିବୀ ଦେଖିଲା ସେ କରୁଣ ଛବି । ପ୍ରତିଟି ପ୍ରାଣରେ ଗୁମୁରି ଉଠିଲା କରୁଣା । ପ୍ରତି ଆଖିରେ ଜମିଗଲା ଲୁହ ।

ଯେ ସିରିଆର ଛୁଆ ନୁହେଁ, ଯେ ମଣିଷ ଛୁଆଟେ । ଗଲା ଚାରି ବର୍ଷ ହେଲା ମରୁଚି ସିରିଆ । ଦୁଇ ଲକ୍ଷ କୋଡ଼ିଏ ହଜାର ଲୋକ ବେଘର ହେଲେଣି । ପ୍ରାୟ ଅଧା ସିରିଆ ଖାଲି ହୋଇଗଲାଣି । ଖାଲି ସିରିଆ ନୁହେଁ, ଆଫ୍‌ଗାନିସ୍ଥାନ୍, ପାକିସ୍ତାନ୍, ମଧ୍ୟଏସିଆର ଅନେକ ଦେଶ ଏବଂ ବହୁ ଆଫ୍ରିକୀୟ ଦେଶରୁ ଲକ୍ଷ ଲକ୍ଷ ବେଘର, ବେସାହାରା ଲୋକ ହିଂସାର, ଗଣହତ୍ୟାର, ଭୋକ ଓ ଖାଦ୍ୟାଭାବର ଶିକାର ହୋଇ ଶରଣାର୍ଥୀ ସାଜିଛନ୍ତି । ଅଧିକାଂଶ ଯାଉଛନ୍ତି ୟୁରୋପ୍; କିନ୍ତୁ ୟୁରୋପ ଯେ ତା ସୀମାକୁ ବନ୍ଦ କରିଦେଇଛି ! ଫଳରେ ବହୁ ଶରଣାର୍ଥୀ ସମୁଦ୍ରରେ ବୁଡୁଛନ୍ତି । ବହୁତ ଆସିଥିବା ଟ୍ରକରେ ମରି ସଢ଼ୁଛନ୍ତି ।

ଏହିପରି ଅବସ୍ଥାରେ ଆଲ୍ୟାନ୍ କୁର୍ଦିର ଛବି ସବୁ ମଣିଷଙ୍କୁ ଚମକେଇଦେଲା । ମଣିଷ ଜାତି ଭିତରେ କରୁଣା ଜଗେଇଦେଲା । ଏବେ ଗୋଟା ୟୁରୋପ ଏ ଶରଣାର୍ଥୀମାନଙ୍କୁ ଆଶ୍ରୟ ଦେବାକୁ ତିଆର ହୋଇଗଲା । ସବୁଠୁ ଆଗେ ଜର୍ମାନୀ ଅଛି । ସବୁ ଦେଶରେ ବାଣ୍ଟି ହୋଇ ରଖାଯିବ ଘରହୀନ, ସାହାହୀନଙ୍କୁ । ଫିନ୍‌ଲାଣ୍ଡର ପ୍ରେସିଡେଣ୍ଟ୍ ତ ନିଜର ବଳକା ଘରେ ଆଶ୍ରୟପ୍ରାର୍ଥୀଙ୍କୁ ରଖିବାକୁ ଆଗ୍ରହ କରିଛନ୍ତି ।

ଏଇ ମାନବିକତା ଦେଖେଇ ୟୁରୋପବାସୀ ସେମାନଙ୍କର ମହତ୍ତ୍ୱ ବଜାୟ ରଖିଲେ; ହେଲେ ସେଇ





ଟିକିପିଲା ଆଲ୍ୟାନ କୁର୍ଦ୍ଦି ! ତା ଆତ୍ମା ଯଦି ଦେଖୁଥିବ; ଖୁସି ହେଉଥିବ ନାଁ !

ଚାରିବର୍ଷ ତଳେ ନାପାଲାମ୍ ବୋମାରେ ଜଳୁଥିଲା ଭିଏତନାମ୍ । ଆଉ ଗୋଟିଏ ଛୋଟ ଝିଅ । ଦେହରୁ ତା'ର ଚମଡ଼ା ଛାଡ଼ି ଯାଇଥାଏ । ନିଜକୁ ରକ୍ଷା କରିବାକୁ ସେ ପାଗଳ ପରିକା ଦଉଡୁଥାଏ । ସେଇ ଫଟୋଟା ଦେଖିଥିଲା ବିଶ୍ୱ । ଚକିତ ହୋଇଗଲା । ଅଶ୍ରୁସିକ୍ତ ହୋଇଗଲା, ଆଉ ଭିଏତ୍‌ନାମ୍‌ରେ ଯୁଦ୍ଧ ବନ୍ଦ କରିବାକୁ ଆମେରିକା ବାଧ୍ୟ ହୋଇଥିଲା । ସେଠି ଆସିଥିଲା ଶାନ୍ତି ।

ଏବେ ଯୁଦ୍ଧ କି ନିଷ୍ଠୁର ! କି କରୁଣ ! ସେ କଥା କ'ଣ ସାରା ଦୁନିଆକୁ ବୁଝେଇବାକୁ ହେବ ! ସେଇ ଟକିପୁଅ ଆଲ୍ୟାନ୍ କୁର୍ଦ୍ଦି ମୃତ୍ୟୁରେ ଯୁଦ୍ଧର ମୃତ୍ୟୁଗୀତ ଲେଖାହୋଇନି । ବୁଝ୍‌ରେ ମଣିଷଜାତି ବୁଝ୍ !

ସେଇ ପିଲାଟିର ଛବିକୁ ନେଇ ଯୁଦ୍ଧଖୋର ସିରିଆନ୍ ଆଇ.ଏସ୍. ନୂଆ ଚାଲ୍ ଖେଳୁଛି । ସେ କହୁଛି– ଦେଶ ଛାଡ଼ି ଯେଉଁମାନେ ଅନ୍ୟତ୍ର ପଳାଉଛ, ଦେଖ ଏଭଳି ଅବସ୍ଥା ତମର ହେବ । ହେଲେ ସେମାନଙ୍କ ବିବେକ ସେମାନଙ୍କୁ କହୁନି ଯୁଦ୍ଧ ବନ୍ଦ କରିବା ପାଇଁ ! ଯୁଦ୍ଧ ଯୋଗୁଁ ସିନା ଏଭଳି ଦୁର୍ଦ୍ଦଶା ! ନ ହେଲେ ଘରଭୂଇଁ ଛାଡ଼ି କିଏ ଏମିତି ପାଗଳ ପରି ଅନ୍ୟ ଦେଶକୁ ଯାଆନ୍ତା !

ସଂଗ୍ରହ **--ଡ. ଶୁଭେନ୍ଦ୍ର ମୋହନ ଶ୍ରୀଚନ୍ଦନ ସିଂହ,** *ରେଢ଼ାଖୋଲ- ୭୬୮୧୦୬*

---

ଉତ୍ତର-– ଚିତ୍ରର କଣରେ ଲେଖାଥିବା ଦୁଇଟି ସଂଖ୍ୟାର ଗୁଣଫଳ ମଝିରେ ଲେଖାଥିବା ସଂଖ୍ୟା ସହିତ ସମାନ । ସେହି କ୍ରମରେ ଲିଭିଯାଇଥିବା ସଂଖ୍ୟାଟି ହେବ ନବେ ।




**ମୁଁ** ସିଙ୍ଗାପୁର ଯାଇଥିଲି, ସେଠାରେ ରହଣି କାଳରେ ଦର୍ଶନୀୟ ସ୍ଥାନ ବୁଲିବା ଅବସରରେ ନଂ୧- ଏମ୍ପ୍ରେସ୍ ପ୍ୟାଲେସ୍ ସିଙ୍ଗାପୁର-୧୭୯୫୫ ଠାରେ ଅବସ୍ଥିତ 'ଏସିୟାନ୍ ସିଭିଲାଇଜେସନ୍ ମ୍ୟୁଜିୟମ୍' ତନ୍ନତନ୍ନ କରି ଦେଖିବାର ସୁଯୋଗ ପାଇଥିଲି । ଭାରତୀୟମାନେ ଦେଶାନ୍ତର ଗମନକରି ସିଙ୍ଗାପୁରରେ ବସତିସ୍ଥାପନ କରିଥିବାର ବର୍ଣ୍ଣନା ମୋର ଦୃଷ୍ଟିରେ ପଡ଼ିଲା । ବର୍ଣ୍ଣନାଟିର ଶୀର୍ଷକ ଥିଲା 'ଦି ଇଣ୍ଡିଆନ୍‌ସ୍' ଏବଂ ସେଥିରେ ଏକ ଶିଖ୍ ଅଫିସରଙ୍କ ଫଟୋ ରହିଥିଲା । ତନ୍ମଧ୍ୟରୁ ଓଡ଼ିଶା ସଂପର୍କରେ ହୋଇଥିବା ବର୍ଣ୍ଣନା ପାଠକରି ମୁଁ ସ୍ତମ୍ଭୀଭୂତ ହୋଇଗଲି । ଜଣେ ଓଡ଼ିଆ ହିସାବରେ ମୋତେ ବହୁତ ଖରାପ ଲାଗିଲା ।

ବର୍ଣ୍ଣନାଟି ହେଉଛି ଯେ 'କ୍ଲିଂଗସ୍', ଯାହା ପୁରାତନ ଭାରତୀୟ ରାଜ୍ୟ କଳିଙ୍ଗ ଏବଂ ବର୍ତ୍ତମାନର ଓଡ଼ିଶା, ତାମିଲ ଭାରତୀୟଙ୍କ ଲାଗି ଏକ ମାଳୟ ଆଖ୍ୟା । ମୋ ମତରେ ବର୍ଣ୍ଣନାଟି ସଂପୂର୍ଣ୍ଣ ପ୍ରମାଦଯୁକ୍ତ । ମନେପଡ଼ିଲା ଯେ ପୌରାଣିକ ମତରେ- ମାଳବ ରାଜା ଇନ୍ଦ୍ରଦ୍ୟୁମ୍ନ ଜଗନ୍ନାଥ ମନ୍ଦିର ତୋଳାଇଥିଲେ । ମୋର ସ୍ୱଳ୍ପ ଜ୍ଞାନଗରିମାରେ ମୁଁ ଏହାର ପ୍ରତିବାଦ କରିପାରିଲି ନାହିଁ । ଏବେ ସିଙ୍ଗାପୁରରେ ବହୁତ ଓଡ଼ିଆ ସ୍ଥାୟୀ ଓ ଅସ୍ଥାୟୀ ଭାବରେ ବସବାସ କରି ଜୀବିକା ନିର୍ବାହ କରୁଛନ୍ତି; କିନ୍ତୁ ଏହା ବୋଧହୁଏ କାହାର ଦୃଷ୍ଟିଗୋଚର ହୋଇନାହିଁ ।

**-- ଶ୍ରୀ ନାରାୟଣ ପ୍ରସାଦ ନନ୍ଦ,** *ନିମସାହି, କଟକ- ୭୫୩୦୦୧*

# ପ୍ରକୃତ ସାଧୁ

ଶ୍ରୀ ଲକ୍ଷ୍ମୀଚରଣ ସାମନ୍ତରାୟ



ଜଣେ ରାଜା ଥିଲେ । ସେ ସାଧୁ ଆନନ୍ଦ ସ୍ୱାମୀଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । ତାଙ୍କର ସଂସାର-ବୈରାଗ୍ୟ ସ୍ୱଭାବକୁ ଅତ୍ୟନ୍ତ ପ୍ରଶଂସା କରୁଥିଲେ । ଥରେ ରାଜା ସେହି ସାଧୁଙ୍କୁ ନିଜ ନଅରକୁ ଆମନ୍ତ୍ରଣ କଲେ ଏବଂ ସାଧୁ ମଧ୍ୟ ରାଜାଙ୍କ ଅନୁରୋଧ ରକ୍ଷା କରି ବାହାରିପଡ଼ିଲେ । ଯଦିବା ରାଜା ଆଶା କରୁଥିଲେ ସାଧୁ ରାଜଭବନ ଭିତରକୁ ଯିବେ ନାହିଁ; ମାତ୍ର ସାଧୁ ଯିବା ପାଇଁ ସମ୍ମତ ହୋଇଗଲେ ଏବଂ ରାଜା ମଧ୍ୟ ନିଜ ମହଲରେ ତାଙ୍କ ରହିବାର ବନ୍ଦୋବସ୍ତ କରିଦେଲେ । ରାଜାଙ୍କ ଆତିଥ୍ୟ ସ୍ୱୀକାର କରି ବିଳାସବ୍ୟସନରେ ରହିଲେ ମଧ୍ୟ ସାଧୁଜଣଙ୍କ ନିଜର ସାଧନାକ୍ରମ ଜାରି ରଖିଥିଲେ ।

ଏହିଭଳି ଦୁଇମାସ ବିତିଗଲା । ରାଜା ଦିନେ ସାଧୁଙ୍କ ନିକଟକୁ ଆସି କହିଲେ, "ମହାତ୍ମନ୍ ! ମୁଁ ଭାବିଥିଲି ଆପଣ ସଂସାର-ବୈରାଗୀ ବୋଲି, କିନ୍ତୁ ଏବେ ଦେଖୁଛି, ଆପଣ ଓ ମୁଁ ପ୍ରାୟ ଏକା ଭଳି ।" ସାଧୁବାବା କହିଲେ, "ରାଜନ୍ ! ମୋର ଅନ୍ତରାତ୍ମା ଠିକ୍ ପୂର୍ବ ଭଳି ରହିଛି, ଯଦି ଏହାର ପ୍ରମାଣ ଚାହୁଁଛନ୍ତି, ତେବେ ମୋ ସହିତ ଆସନ୍ତୁ ।"

ରାଜମହଲର ଭୋଗବିଳାସ ଛାଡ଼ି ସାଧୁ ନିଜର ଦଣ୍ଡକମଣ୍ଡଳୁ ଧରି ବାହାରି ପଡ଼ିଲେ ଏବଂ ରାଜା ମଧ୍ୟ ତାଙ୍କ ପଦାଙ୍କ ଅନୁସରଣ କଲେ । ଘଞ୍ଚଜଙ୍ଗଲ ମଧ୍ୟରେ ଥିବା ଏକ ଗୁମ୍ଫାରେ ସାଧୁ ରାଜାଙ୍କୁ କହିଲେ, "ରାଜନ୍ ! ତୁମ ରାଜ୍ୟର ସୀମା ତ ଛୋଟ, ତା'ର ସୀମା ତ ଆମେ ପାର୍ ହୋଇଗଲେ । ଏବେ ଆମ ରାଜ୍ୟକୁ ଦେଖ, ଏହାର ସୀମାସରହଦ୍ କିଛି ନାହିଁ । ମୁଁ ଅବଶ୍ୟ ତୁମ ମହଲରେ ଥିଲି; କିନ୍ତୁ ମହଲ ମୋ ଭିତରେ ନ ଥିଲା । ଭୋଗବିଳାସ ଭିତରେ ଥାଇ ବି ଯିଏ ତାହାକୁ ଇଚ୍ଛା କଲାମାତ୍ରେ ତ୍ୟାଗ କରିଦିଏ, ସେ ହିଁ ପ୍ରକୃତ ସାଧୁ ।"

ରାଜା ନିଜର ଭୁଲ୍ ବୁଝିପାରିଲେ ଏବଂ ସାଧୁଙ୍କୁ ପୁଣି ଥରେ ମହଲକୁ ଫେରିଯିବାକୁ ଅନୁରୋଧ କଲେ; ମାତ୍ର ସାଧୁ ବିନମ୍ରତାପୂର୍ବକ ତାହାକୁ ପ୍ରତ୍ୟାଖ୍ୟାନ କରି ଆଶୀର୍ବାଦ ଦେଇ ରାଜାଙ୍କୁ ବିଦାୟ ଦେଲେ ।

ଆମେ ତ ସବୁ ଭୋଗବିଳାସ ମଧ୍ୟରେ ଦିନ କାଟୁଛୁ, ମାତ୍ର ଏହା ବିନା ବଞ୍ଚିପାରିବା କଥା ଚିନ୍ତା କରୁଛୁ କି ? ତେବେ ବିଳାସବ୍ୟସନ ବିନା ବଞ୍ଚିହୁଏ, ଏକଥା ଚିନ୍ତା କରିବା ଆବଶ୍ୟକ ।

*ଖାଜାସାହି, ବ୍ରହ୍ମପୁର- ୭୬୦୦୦୧*

---

ଉତ୍ତର-- ୧) ବିଶ୍ୱନାଥନ୍ ଆନନ୍ଦ, ୨) ୮ଟି, ଗୁଜୁରାଟ, ରାଜସ୍ଥାନ, ମଧ୍ୟପ୍ରଦେଶ, ଛତିଶଗଡ଼, ଝାଡ଼ଖଣ୍ଡ, ପଶ୍ଚିମବଙ୍ଗ, ତ୍ରିପୁରା ଓ ମିଜୋରାମ, ୩) ୬, ୪) ନେପଚ୍ୟୁନ୍, ୫) ଚିତ୍ରକଳା (Painting), ୬) Pradhan Mantri Jan Dhan Yojana, ୭) ପ୍ରତିଭା ରାୟ, ୮) ସାଣ୍ଟୋସ୍ (ବ୍ରାଜିଲ) ୯) ଗଣିତଶାସ୍ତ୍ର, ୧୦) ଚେସ୍



# ଫୁଲରାଣୀ

ଶ୍ରୀ ଚିତ୍ତରଞ୍ଜନ
ପଟ୍ଟନାୟକ

ଫୁଲ ରାଇଜର 'ଫୁଲରାଣୀ' ତୁମେ
ଅନ୍ତରେ ଭରିଛ ମହୁ,
ନାହୁଡ଼ ପାହାର କଷଣ-ଶୋଷଣ
ଝରିଯାଏ ଲୁହ-ଲହୁ ।
ସକାଳ ସଞ୍ଜରେ ଧୀର ପବନରେ
ବିତରି ଦେଇଛ ବାସ
କ୍ଷୀଣ ଜୀବନରେ ନାହିଁ ଗୋ ଶୋଚନା
ମୁଖେ ଅନାବିଳ ହାସ ।
ଦେବ-ଦେବୀଙ୍କର ଚରଣ କମଳେ
ମଥାରେ, ଗଳାରେ ଶୋଭା
ମନ୍ଦିରେ-ମନ୍ଦିରେ ହୃଦୟ କନ୍ଦରେ
ସଉରଭେ ମନ ଲୋଭା ।
ମଧୁରିମା ରୂପ ଉଦାର ହୃଦୟ
ଲହୁଣି ପିତୁଳା ସମ,
ଦେଖିନାହିଁ ଆଖି ଶୁଣିନାହିଁ କାନ
ନୁହେଁ କେବେ ନିରିମମ ।
ରୂପ, ରଙ୍ଗେ ତୁମେ କେତେ ଭଳି ଭଳି
ହସଝରା ଶାନ୍ତ ମୁଖ
ସେ ରୂପେ ଚାହାଣି ଦେଖିଦେଲେ ଥରେ
ମିଳଇ ସରଗ ସୁଖ ।
କୋମଳ ଶିଶୁର ହାତରେ ପଡ଼ିଲେ
ମନଖୋଲା ଦିଏ ହସି
ବାଲିର ଦେଉଳ ପୂଜା କରିଥାଏ
ସାଙ୍ଗସାଥୀ ମେଳେ ବସି ।
ସକାଳ ସଞ୍ଜରେ ଝରିଯାଅ ଯେବେ
ବାସିଫୁଲ ହୁଏ ଠୁଳ,
ସେହି ବାସିଫୁଲେ ଅତର ତିଆରି
ଦେଇଥାଅ ତୁମେ ମୂଲ ।
ଭଲଗୁଣ ଯେତେ ଶିଖିବି ତୁମଠୁ
ରଖି ମନ ଚଇତନ
ମୋ ମନ ଫେଣାରେ ସାଇତି ରଖିବି
ସେହି ମୋ ସାଉଁଟା ଧନ ।
ଫୁଲ ରାଇଜର ଆଗୋ 'ଫୁଲରାଣୀ'
ଫୁଟୁଥାଅ ଫୁଲବନେ,
ଅନ୍ତର ତଳରେ ହୁଅ ଅପାସୋରା
ଜୀବନର ପ୍ରତିକ୍ଷଣେ ।

*'ନିଗମ ନିବାସ', ଘୁଟୁକେଶରୀ, ନରଣପୁର, କେନ୍ଦୁଝର-୭୫୪୦୧୪*

---

# ମୁଁ କିଏ ? ?

ପିଲାଦିନେ ରଙ୍ଗ ଶାଗୁଆ ମୋହର
ବଡ଼ ହେଲେ ହଳଦିଆ ।
ଚମଡ଼ା ଚୋପାକୁ ଛଡ଼େଇଲେ ମିଳେ
ମିଠାରସ ବହଳିଆ ।।
ଆସିଲେ ଗରମ ଗିରୀଷମ କାଳ
ତହିଁରେ ମୁଁ ବଡ଼ ହୁଏ ।
ଭଲ କରି ଭାବି ଉତ୍ତର ଦିଅରେ
ପିଲାମାନେ ! ମୁଁ କିଏ ?

--**ଶ୍ରୀ ନିମାଇଁ ଚରଣ ଦାସ,** ପ୍ଲଟ ନଂ: ୧୭୮୮/୨୯୫୨, ଟେଲିକମ୍ କଲୋନି, ଶିଶୁପାଳଗଡ଼, ଭୁବନେଶ୍ୱର-୭୫୧୦୦୨ *(ଉତ୍ତର ୨୮ ପୃଷ୍ଠାରେ)*

# ନିହାତି ଜାଣିବା କଥା

ଡା: ମହାପାତ୍ର ଆନନ୍ଦ ଶଙ୍କର ମିଶ୍ର

ମୋ ନାତି ରାଜା ଛୋଟ ଥିବାବେଳେ ମୋ କୋଳରେ ବସି ଟି.ଭି ଦେଖେ । ଟି.ଭିରେ ସବୁ ଚମକପ୍ରଦ ଦୃଶ୍ୟ ସେ ଆଖି ବଡ଼ ବଡ଼ କରି ଦେଖେ । କାର୍ଟୁନ୍ ଧାରାବାହିକରେ ଦେଉଥିବା କଣ୍ଢେଇମାନଙ୍କ ଖେଳ ସେ ମଜାରେ ଦେଖେ । କିନ୍ତୁ ଡାଇନୋସରସ୍‌ମାନଙ୍କୁ ଦେଖି ସେ ସେମାନଙ୍କୁ ବୁଝି ପାରେନାହିଁ । ମୁଁ ତାକୁ ବୁଝାଏ ଯେ ସେମାନେ ବହୁ ବର୍ଷ ଆଗରୁ ଥିଲେ, ଏବେ ନାହାନ୍ତି । ଏ କଥା ତାକୁ କିନ୍ତୁ ସନ୍ତୁଷ୍ଟ କରିପାରେ ନାହିଁ । ସେ କହେ– ସେମାନେ ଏବେ ନାହାନ୍ତି ତ ଆଗରୁ ବି ନ ଥିବେ ।

ଦିନେ ତା ଜେଜେମା'ଙ୍କ ମାଆ– 'ବଡ଼ଆଈ' ନିଜେ ଆଙ୍କିଥିବା ଏକ ବିଲେଇର ଛବି ତା' ପାଖକୁ ପଠେଇଲେ ରଙ୍ଗ କରିବା ପାଇଁ । ମଝିରେ ମଝିରେ ସେ ଏମିତି କରନ୍ତି । ରାଜା ବିଲେଇଟାକୁ ରଙ୍ଗ ଦେଇ ମୋ ଚଉକିରେ ବସିଲା, ମୋତେ ସେଇଟା ଦେଖାଇବା ପାଇଁ । ସେଇଟା ସେ ଲାଲ୍, ସବୁଜ ଆଉ ନେଳିଆ ରଙ୍ଗରେ ରଙ୍ଗେଇଥାଏ । ମୁଁ କହିଲି, "ମୁଁ ଏଭଳି ରଙ୍ଗରଙ୍ଗିଆ ବିଲେଇ ତ କେଉଁଠି ଦେଖିନାହିଁ!"

"ତମେ ଦେଖି ନ ଥିବ । କିନ୍ତୁ ଏଇଟା ହେଉଛି ମୋର ଆଉ ମୋ ବଡ଼ଆଈଙ୍କ ବିଲେଇ ।" ସେ ମୋ ଦେହରେ ହାତ ଛନ୍ଦି ମୋତେ ବୁଝେଇଦେଲା । ମୁଁ ତା' କଥା ଶୁଣୁ ଶୁଣୁ ଟି.ଭି ଖୋଲିଲି । ସେତେବେଳେ ଇନ୍ଦିରା ଗାନ୍ଧୀଙ୍କ ଜୀବନୀର ଏକ ତଥ୍ୟଚିତ୍ର ଚାଲିଥାଏ । ଦେଖାଗଲା ବାଳିକା ବୟସର ଇନ୍ଦିରା ଗାନ୍ଧୀ ବଗିଚାରେ ପାଣି ଦେଉଛନ୍ତି । ରାଜା ପଚାରିଲା, "ଏ ଝିଅଟି କିଏ ?"

"ସେ ହେଉଛନ୍ତି ଇନ୍ଦିରା ଗାନ୍ଧୀ । ସେ ଭାରତର ପ୍ରଧାନମନ୍ତ୍ରୀ ଥିଲେ ।"

"ସେ ଏବେ କେଉଁଠି ଅଛନ୍ତି ?"

"ସେ ମରିଗଲେଣି ।"

"ସେ ମରିନାହାନ୍ତି, ସେ ପରା ବଗିଚାରେ ପାଣି ଦେଉଛନ୍ତି !"

ଏଇ ସମୟରେ ପୂର୍ବ ଛବି ବଦଳିଯାଇ ଦେଖାଗଲା ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଭାଷଣ ଦେଉଛନ୍ତି । ରାଜା ପାଟିକଲା, "ଦେଖ, ଦେଖ, ସେ ବଞ୍ଚିଛନ୍ତି ।"

"ଯେ ତ ବହୁ ଆଗର ଛବି ରାଜା । ଏବେ କିନ୍ତୁ ସେ ନାହାନ୍ତି ।" ରାଜା ମୋ ମୁହଁକୁ ଚାହିଁଲା, ଯେପରି ମୁଁ ତାକୁ ଥଟ୍ଟା କରୁଛି । କହିଲା, "ସେ ପୂରାପୂରି ମରିଯାଇଛନ୍ତି ?"

"ହଁ ।"

"ତାଙ୍କ ଗୋଡ଼ ମରିଯାଇଛି ?"

"ହଁ ।"

"ତାଙ୍କ ମୁଣ୍ଡ ମରିଯାଇଛି ?"

"ହଁ ।" ଶେଷ ପ୍ରଶ୍ନଟା ସେ ବହୁ ସମୟ ନୀରବ ରହିବା ପରେ ପଚାରିଥିଲା । ତା' ପରେ ସେ କହିଲା, "ସତରେ ସେ ବଢ଼ିଆ ଭାଷଣ ଦେଉଛନ୍ତି ।"

ତା' ସମସ୍ୟାଟା ସମ୍ପର୍କରେ ସେ ଗୁରୁତ୍ୱର ସହ ଭାବୁଛି ବୋଲି ଭାବି ମୁଁ ହସି ପକାଇଲି ।



ଇନ୍ଦିରା ଗାନ୍ଧୀଙ୍କ ଏ ଘଟଣା ପରେ ରାଜାର ମନ ଭିତରେ 'ମୃତ୍ୟୁ' ଏକ ଭାବାନ୍ତର ସୃଷ୍ଟିକଲା । ଏହା ପରେ ସେ ଯେତେବେଳେ ଆମ ଆମ୍ବତୋଟାରେ ମୋ ସହିତ ଘୂରିବୁଲେ, ମୁଁ ଲକ୍ଷ୍ୟ କରେ ସେ ଚଢ଼େଇ, ମୂଷା, ଝିଟିପିଟି ଅବା କଙ୍କିର ମୃତଦେହ ଖୋଜୁଛି । ସେମାନଙ୍କ ମଧ୍ୟରୁ କାହାରି ମୃତଦେହ ଦେଖିଲେ ସେ ଘରକୁ ଆସି ସେ ସମ୍ପର୍କରେ ଗପ ଫାନ୍ଦି କହେ । ଦିନେ ଆମ୍ବତୋଟା ଭିତରେ ସେ ମୋ ସହିତ ବୁଲୁଛି, ଏହି ସମୟରେ ଏକ ଗୁଣ୍ଡୁଚିମୂଷାର ଲୋମ ଓ ଲାଞ୍ଜ ସେ ଦେଖିଲା । ତାକୁ ହାତରେ ଛୁଇଁ ସେ କହିଲା, "ବାବା, ଚିଙ୍କୁ ଗୁଣ୍ଡୁଚିମୂଷାଟା ଡିନର୍ ଖାଇବାକୁ ଗଲାବେଳେ, ବଦ୍‌ମାସ୍ ଶିଆଳଟା ତାକୁ ଧରି ଖାଇଦେଇଛି । ସିଏ ଏବେ ତା ପେଟ ଭିତରେ ଅଛି ।"

ମୁଁ କହିଲି, "ସେ ଚିଙ୍କୁ ଗୁଣ୍ଡୁଚିମୂଷା ତ ଟି.ଭି.ରେ ଦେଖିଥିଲୁ, ଏଇଟା ତ ଅସଲି ଗୁଣ୍ଡୁଚିମୂଷାର ଲାଞ୍ଜ !"

"ସେ କଥା ମୋତେ ଜଣା, କିନ୍ତୁ ମୋତେ ଦିଶୁଛି ସିଏ ଏବେ ଶିଆଳ ପେଟରେ ଅଛି ।" – ସେ କଳ୍ପନାରେ ଘଟଣାଟା ତିଆରି କରିଥିଲା ।

ଥରେ ରାଜା କାହା ପାଖରୁ ଶୁଣିଲା ମୃତ୍ୟୁ ପରେ ଦେହଟା ପଡ଼ି ରହେ, କିନ୍ତୁ ଭିତରର 'ପ୍ରାଣ' ଆତ୍ମା ହୋଇ ଉପରକୁ ଉଠିଯାଏ । ସେ ଏ ବିଷୟରେ ମୋତେ ପଚାରିଲା । ମୁଁ କହିଲି, "ଏ କଥାରେ କିଛି ପ୍ରମାଣ ନ ଥିଲେ ବି ଆମକୁ ଏ କଥା ମାନିବାକୁ ପଡ଼ିବ । ଯାକୁଇ ବିଶ୍ୱାସ କହନ୍ତି ।"

ଏ କଥା ଶୁଣିବା ପରେ ରାଜା ପ୍ରାୟ ସପ୍ତାହେ ଧରି ଏ ବିଷୟରେ ଭାବିଲା । ଦିନେ ଆମ୍ବତୋଟାରେ ବୁଲୁଥବାବେଳେ ମୁଁ ତାକୁ ଆମ ସଜନା ଗଛରେ ସଁବାଲୁଆମାନେ ଛାଡ଼ି ଯାଇଥିବା ଲୋମ ସବୁ ଦେଖାଇଲି । ମୁଁ ତାକୁ କହିଲି, "ସଁବାଲୁଆମାନେ ପ୍ରଜାପତି ହୋଇ ଉଡ଼ିଯିବା ପରେ ଏ ଖୋଳପା ସବୁ ଛାଡ଼ି ଯାଇଛନ୍ତି ।'' ସେ ଆଗରୁ ସେଠି ସଁବାଲୁଆମାନେ ସାଲୁସାଲୁ ହେବାର ଦେଖିଥିଲା । ଏଣୁ ଏକଥାକୁ ସହଜ ଭାବରେ ବିଶ୍ୱାସ କଲା ।

ସେ କହିଲା, "ଆମେ ତ ସତସତିକା ପ୍ରଜାପତି ଦେଖୁଛେ । ଆମେ ତାକୁ ଛୁଇଁ ବି ପାରିବା; କିନ୍ତୁ ଜଣେ ଯଦି ମରିଯିବ, ସମସ୍ତେ କେବଳ ତାକୁ ଟି.ଭି.ରେ ହିଁ ଦେଖିପାରିବେ !"

ମୁଁ କହିଲି, "ସତକଥା, କିନ୍ତୁ ତମେ ବି ତାକୁ ତମ କଳ୍ପନା ବା ଚିନ୍ତା ଭିତରେ ଦେଖିପାରିବ ।" ସେ କିଛି ସମୟ ଚିନ୍ତା କରି ପଚାରିଲା, "ଏଟା କେମିତି ହେବ ?" ମୁଁ ତାକୁ କହିଲି ତା ପ୍ରିୟ ସାଙ୍ଗ ରବି କଥା – ଆଖି ବୁଜି ଭାବିବା ପାଇଁ । ସେ ସେମିତି କଲା ଏବଂ କହିଲା, "ମୁଁ ରବିର ସ୍ୱର ବି ଶୁଣିପାରୁଛି ।" ଏ ବିଷୟରେ

କିଛିଦିନ ଚିନ୍ତା କରିବା ପରେ ଆଗକୁ ଆସୁଥିବା ତା' ନିଜ ଜନ୍ମଦିନ କଥା ଆଲୋଚନା କରିବାରେ ସେ ବ୍ୟସ୍ତ ରହିଲା ।

ଦେଢ଼ବର୍ଷ ବିତିଯାଇଛି । ରାଜା ବି ଟିକେ ବଡ଼ ହୋଇଯାଇଥାଏ । ଦିନେ ବଡ଼ଆଇଙ୍କ ମୃତ୍ୟୁ ଖବର ଆମେ ପାଇଲୁ । ଆମ ସମସ୍ତଙ୍କ ସହ ରାଜା ବି ବଡ଼ଆଇଙ୍କ ଘରକୁ ଗଲା । ଘରେ ବନ୍ଧୁବାନ୍ଧବ ଭର୍ତ୍ତି ହୋଇଥାନ୍ତି । ସମସ୍ତେ ଆଇଙ୍କ କଥା ଚର୍ଚ୍ଚା କରୁଥାନ୍ତି । ବଡ଼ଆଇଙ୍କ ଭଲଗୁଣ ଯୋଗୁଁ ଘରେ ବାହାରେ ସମସ୍ତେ ତାଙ୍କୁ ଭଲପାଉଥିଲେ । ଆମେ ରାଜାକୁ ତାଙ୍କ ମୃତଦେହ ପାଖକୁ ଯିବା ବିଷୟରେ କିଛି ହେଲେ କହିଲୁ ନାହିଁ । ଯାହା ତାକୁ ଭଲଲାଗିବ, ସେୟା କରିବା ପାଇଁ ତାକୁ ଛାଡ଼ିଦେଲୁ ।

ଶବ ଶ୍ମଶାନକୁ ଯିବା ପୂର୍ବ ମୁହୂର୍ତ୍ତରେ ରାଜା ଆଇଙ୍କ ମୃତଦେହ ପାଖକୁ ଯିବ ବୋଲି ମୋତେ କହିଲା । ମୁଁ ହାତ ଧରି ତାକୁ ଶବ ପାଖକୁ ନେଇଗଲି । ସେ ବହୁତ ସମୟ ଧରି ମୃତଦେହକୁ ଚାହିଁ ରହିଲା ଏବଂ ତା'ପରେ କହିଲା, "ବାବା, ଚାଲ ଯିବା ।" ତା'ପରେ ସେ ମୋତେ ଟାଣି ଟାଣି ମୋ ଶାଶୂଙ୍କ ଛୋଟ ରୁମ୍‌କୁ ନେଇଗଲା, ଯେଉଁଠି ସେ ପରିଣତ ବୟସରେ ବି ବସି ସିଲେଇ କରୁଥିଲେ । କିଛି ସମୟ ମୋ ଆଡ଼କୁ ନୀରବରେ ଚାହିଁ ରହିବା ପରେ ସେ କହିଲା, "ବାବା, ସେ ବଡ଼ଆଇ ନୁହନ୍ତି ।"

"କ'ଣ କହିବାକୁ ଚାହୁଁଛୁ ତୁ ?"

"ସେଠି ସେ ନାହାନ୍ତି ।"

"ତା' ହେଲେ କେଉଁଠି ?"

"ମୋତେ ତାଙ୍କ ସ୍ୱର ଅନ୍ୟଠି ଶୁଭୁଛି– ।"

"ଏ କଥା ତୁ କାହିଁକି ଭାବୁଛୁ ?"

"ମୁଁ ଠିକ୍ ଜାଣିଛି ।" ଆମେ ନୀରବରେ କିଛି ସମୟ ପରସ୍ପରକୁ ଚାହିଁ ରହିଲୁ । ଶେଷରେ ସେ କହିଲା, "ୟା'କୁ କ'ଣ ବିଶ୍ୱାସ କହନ୍ତି ?"

ମୁ କହିଲି, "ହଁ ।"

"ତା' ହେଲେ ମୁଁ ଠିକ୍ ବୁଝିଛି ।"

ମୁଁ ବୁଝିପାରିଲି– ସେ ତା' ହୃଦୟ ଭିତରେ ଏକ ବିଶ୍ୱାସ ପାଇସାରିଛି, ଯାହା ତା' ସହିତ ତା' ବାକି ଜୀବନ ସାରା ରହିଥିବ । ଏପରି କି ମୃତ୍ୟୁର ମୁହାଁମୁହିଁ ହେଲେ ବି ୟା'କୁ ସେ ହରାଇବ ନାହିଁ ।

(W. W. MEADEଙ୍କ ଇଂରାଜୀ ଲେଖା ଛାୟାରେ ଲିଖିତ)

*ବୈରାମ ନଗର ଛକ, ବାଲେଶ୍ୱର- ୪*

ଉତ୍ତର: ଆମ୍ବ



## ଅଛି–ନାହିଁ

ପାର୍ଶ୍ୱରେ ଦିଆଯାଇଥିବା ଦୁଇଟି ଚିତ୍ର ମଧ୍ୟରେ ଅତି କମ୍‌ରେ ୫ଟି ପ୍ରଭେଦ ଅଛି । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଖୋଜି ବାହାର କରନ୍ତୁ ତ !

*(ଉତ୍ତର ୩୦ ପୃଷ୍ଠାରେ)*

# ନର୍କର ବିଜ୍ଞାପନ

ଶ୍ରୀ ଅରୁଣ କୁମାର ପଣ୍ଡା

ଆମେ ସମସ୍ତେ ଏକଥା ଜାଣୁ ଯେ ମୃତ୍ୟୁ ପରେ ମଣିଷକୁ ଧର୍ମରାଜ ଯମଙ୍କ ଦରବାରରେ ହାଜର ହେବାକୁ ପଡ଼େ । ଧର୍ମରାଜଙ୍କ ଦରବାରରେ ନିଷ୍ପତ୍ତି ହୁଏ– କିଏ ସ୍ୱର୍ଗକୁ ଯିବ ଏବଂ କିଏ ନର୍କକୁ ।

ଥରେ ବିଚିତ୍ର ଘଟଣା ଘଟିଲା । ଧର୍ମରାଜ ନିଷ୍ପତ୍ତି ପାଇଁ ଲାଞ୍ଚ ନେବା ଆରମ୍ଭ କରିଦେଲେ । ତାଙ୍କର ଏଭଳି କାର୍ଯ୍ୟ ଫଳରେ ଚାରିଆଡ଼େ ହାହାକାର ପଡ଼ିଗଲା । ମୃତ୍ୟୁଲୋକର ଅଧିବାସୀମାନେ ଭଗବାନଙ୍କ ନିକଟରେ ଏ ନେଇ ଅଭିଯୋଗ କରିବା ପାଇଁ ଏକ ପ୍ରତିନିଧିମଣ୍ଡଳ ପଠାଇଲେ । ଭଗବାନ ସବୁ ଶୁଣି କହିଲେ, "ଧର୍ମରାଜାଙ୍କ ଜାଗାରେ ମୁଁ ଯଦି ଅନ୍ୟ କାହାକୁ ବସାଇଦେବି, ସେ ମଧ୍ୟ ଲାଞ୍ଚ ଖାଇପାରେ ।'' ପ୍ରସଙ୍ଗ ଯାଇ ପୃଥିବୀରେ ପହଞ୍ଚିଲା । ପୃଥିବୀବାସୀ ପ୍ରସ୍ତାବ ଦେଲେ– ଧର୍ମରାଜଙ୍କ ଚୟନ ଭୋଟ୍ ଆଧାରରେ ହେଉ କିମ୍ବା ଯେଉଁମାନେ ମରିବା ପରେ ମୃତ୍ୟୁଲୋକ ଯିବେ, ସେମାନେ ପରସ୍ପରକୁ ଭୋଟ୍ ଦେବେ ଏବଂ ନିର୍ଣ୍ଣୟ କରିବେ– କିଏ ସ୍ୱର୍ଗକୁ ଓ କିଏ ନର୍କକୁ । ଏହି ପଦ୍ଧତିରେ କାମ ଚାଲିଲା ।

ଇତିମଧ୍ୟରେ ଜଣେ ନେତାଙ୍କର ମୃତ୍ୟୁ ହେଲା ଏବଂ ସେ ମୃତ୍ୟୁଲୋକ ଧର୍ମରାଜ-ପୁରରେ ପହଞ୍ଚିଲେ । ନେତାଜଣଙ୍କ ସର୍ବଦା ନିଜ ରାଜନୀତିରେ ମସ୍ତ ରହୁଥିଲେ । ତାଙ୍କୁ ନର୍କ ଓ ସ୍ୱର୍ଗ ବିଷୟରେ କିଛି ଜଣା ନ ଥିଲା । ସେ ଭୋଟ୍ ଦେବା ଆଗରୁ କହିଲେ ଯେ ତାଙ୍କୁ ସ୍ୱର୍ଗ ଓ ନର୍କ ଉଭୟେ ଦେଖାଇ ଦିଆଯାଉ । ଯେଉଁ ଜାଗା ତାଙ୍କୁ ପସନ୍ଦ ହେବ, ସେ ସେଠାକୁ ଯିବା ପାଇଁ ମତ ଦେବେ । ନର୍କର ଅଧିକାରୀ ଏଥିରେ ସହମତ ହେଲେ । ସେ ଗୋଟିଏ ବିମାନ ମଗାଇଲେ ଏବଂ ନେତାଜଣଙ୍କ ସେଥିରେ ବସି ସ୍ୱର୍ଗ ଆଡ଼କୁ ଚାଲିଲେ । ସ୍ୱର୍ଗର କବାଟ ଖୋଲି ନେତାଜଣଙ୍କ ଭିତରକୁ ଚାହିଁଲେ; ଦେଖିଲେ ପନ୍ଦର କୋଡ଼ିଏ ଜଣ ମହାତ୍ମାସନ୍ଥ ହାତରେ ମାଳା ଧରି ଜପ କରୁଛନ୍ତି । ପରିବେଶ ମନୋମୁଗ୍ଧକର ଥିଲା ଏବଂ ଶାନ୍ତିର ବାତାବରଣ ଥିଲା । କେହି କାହା ସହିତ କଥାବାର୍ତ୍ତା କରୁ ନ ଥିଲେ । ନେତାଙ୍କୁ ଏହା ଭଲଲାଗିଲା ନାହିଁ । ସେ ମୁହଁ ମୋଡ଼ି ଅଧିକାରୀଙ୍କୁ ନର୍କ ଦେଖାଇବାକୁ କହିଲେ ।

ନେତାଜଣଙ୍କ ନର୍କରେ ପହଞ୍ଚି ପ୍ରବେଶଦ୍ୱାର କବାଟ ଖୋଲି ଦେଖିଲେ । ଜାଗାଜାଗାରେ ଲୋକେ ଏକାଠି ମଦ ପିଉଛନ୍ତି । ମଉଜମଜଲିସ୍‌ରେ ମାତିଛନ୍ତି ।



ସମସ୍ତେ ମସ୍ତ୍ ଅଛନ୍ତି ଏବଂ ଚାରିଆଡ଼େ ଆନନ୍ଦର ବାତାବରଣ । ନେତାଙ୍କୁ ନର୍କ ଭଲଲାଗିଲା ଏବଂ ସେ ଫେରିଆସି ନର୍କକୁ ଯବା ପାଇଁ ଭୋଟ୍ ଦେବାକୁ ଅଧିବାସୀମାନଙ୍କୁ ନିବେଦନ କଲେ । ନର୍କ ଯିବା ପାଇଁ ନେତାଙ୍କୁ ବହୁ ଅଧିକ ଭୋଟ୍ ମିଳିଲା ଏବଂ ସେ ନର୍କକୁ ଗଲେ ।

ନର୍କରେ ପହଞ୍ଚି ନେତା ମଦ୍ୟପାନ କଲେ । ଖୁବ୍ ନାଚିଲେ, ଗୀତ ଗାଇଲେ ଏବଂ ଯେତେବେଳେ ଥକିଗଲେ, ଇନ୍‌କ୍ୱାରୀ ଅଫିସ୍‌କୁ ଯାଇ ଆରାମ୍ କରିବା ପାଇଁ ସ୍ଥାନ କେଉଁଠି ବୋଲି ପଚାରିଲେ । ନେତାଜୀଙ୍କୁ ସିଧା ଚାଲିବା ପାଇଁ କୁହାଗଲା । ଚାଲିବା ପୂର୍ବରୁ ତାଙ୍କ ଆଖିରେ ପଟି ବାନ୍ଧି ଦିଆଗଲା । ସିଧା ଯାଉ ଯାଉ ନେତାଜଣଙ୍କ ଏକ ଗଭୀର ଖାଲରେ ପଡ଼ିଗଲେ । ଖାଲରେ ପଡ଼ିବା ମାତ୍ରେ ତାଙ୍କୁ ଜୋର୍‌ରେ ମାଡ଼ ହେଲା । ନେତାଜୀ ବ୍ୟସ୍ତ ହୋଇ ପଚାରିଲେ– ତୁମେ ପିଟୁଛ କାହିଁକି ? ଏ ଜାଗା ନାଁ କ'ଣ ? ଉତ୍ତର ମିଳିଲା– ଏହା ହେଉଛି ନର୍କପୁରୀ । ନେତା କହିଲେ– ଏହା କିପରି ନର୍କ ହେବ ? ନର୍କରୁ ତ ମୁଁ ଏବେ ଆସୁଛି । ସେଠାରେ ତ ମଉଜ, ମଜଲିସ୍, ନାଚଗୀତ, ଖାନାପିନା ଚାଲିଛି ।

ନେତାଙ୍କୁ ପିଟୁପିଟୁ ଜଣେ କହିଲା, "ସେଇଟା ହେଉଛି ଆମର ବିଜ୍ଞାପନ ବିଭାଗ । ଏଭଳି ବିଜ୍ଞାପନ ନ ଦେଲେ ନର୍କକୁ କ'ଣ କିଏ ଆସିବ ? ବାସ୍ତବିକ୍ ନର୍କ ହେଉଛି ଆପଣ ବର୍ତ୍ତମାନ ଯେଉଁଠି ଅଛନ୍ତି ।'' ନେତାଜଣଙ୍କ କିଛି ବୁଝି ନ ପାରି ହାଁ କରି ଚାହିଁରହିଲେ ।

ପୂର୍ଣ୍ଣିମା, ୧୩୪୮/ ୪ ସି, ସେକ୍ଟର-୬, କଟକ-୧୪

ଅଛି-ନାହିଁର ଉତ୍ତର-- ୧) ଜାମା ଉପରେ ପକେଟ୍ ନାହିଁ, ୨) ଗ୍ଲୋଭ୍‌ସ୍ ଉପରେ ଗୋଟିଏ ଗାର ନାହିଁ, ୩) ବେକ ଫିତାର ଗୋଟିଏ ବୋତାମ କଳା, ୪) କାନରେ ଗୋଟିଏ ଗାର ଅଧିକ ଅଛି, ୫) ଗୋଟିଏ ଆଖିଡୋଳାର ପୁଅ ନାହିଁ ।

# ଅକାତରେ ଦାନ

ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ

ମେଘ ପଚାରେନି କେତେ ଢାଳେ ପାଣି
କେତେ ମାଟି ନିଏ ଶୋଷି
ଗଛ ପଚାରେନି, କେତେ ଦିଏ ଫଳ
କେତେ ଝଡ଼ି ପଡ଼େ କଷି ।
କାହା ପାଇଁ ଧରା ସୁନାରଣପା ଭରା
କେତେ ଧାତୁ ଅଛି ମିଶି
କିଏ ସେ ପାରିଛି ମାଆର ମମତା
କଷଟି ପଥରେ କଷି ।
କିଏ ସେ ଦେଖାଏ ଅନ୍ଧାରରେ ପଥ
ଆକାଶେ ଦିହୁଡ଼ି ଜାଳି
କିଏ ବିଛାଇଛି ଘାସର ଗାଲିଚା
ମୂଲ ହୁଏନାହିଁ କଳି ।
ଦୂର ଝାଉଁବଣେ ବଇଁଶୀର ଗୀତ
କିଏ ସେ ଶୁଣାଏ ବସି
ମେଘ ପଚାରେନି କେତେ ଢାଳେ ପାଣି
କେତେ ମାଟି ନିଏ ଶୋଷି ।

୩୫-ବସନ୍ତ ବିହାର, ବ୍ରହ୍ମେଶ୍ୱର ମନ୍ଦିର ମାର୍ଗ, ଭୁବନେଶ୍ୱର- ୧୮



# ବାଟ ଦେଖାଅ ମୋତେ

ବୈଜ୍ଞାନିକ ଇଂ ପ୍ରମୋଦ କୁମାର ନନ୍ଦ

ଗର୍ଭ ଭିତରେ ଥାଇ ଯନ୍ତ୍ରଣା
ଲଭିଲି ମୁହିଁ କେତେ !
ଜନମ ପରେ କେତେ ବିପଦ
ଆସିଛି ମୋର ସାଥେ ।୧।
ମାଆ ଯନ୍ତ୍ରଣା ମୋର ଯନ୍ତ୍ରଣା
ଆତ୍ମା ତ ଥିଲା ଏକ
ମା'ଡରିଲେ ମୁଁ ଡରୁଥିଲି
ସହି ଗଭୀର ଦୁଃଖ ।୨।
ଦୁନିଆ ଦେଖେ ଆଜି ମୋ ନେତ୍ର
ରହସ୍ୟ ଅଛି ଭରି
ମାୟା ସଂସାର ଦୁଃଖ ଅପାର
ଭ୍ରମଭ୍ରାନ୍ତିରେ ପୂରି ।୩।



ଅନ୍ତର କଥା ଅନ୍ତରେ ରଖି
ରହିଲି ଏକା ମୌନ
ଜଗତକର୍ତ୍ତା ଆମ୍ଭରି ପିତା
ହୃଦୟେ କଲି ଧ୍ୟାନ ।୪।
ନିରତେ ପ୍ରାର୍ଥେ ସଦୟ ପ୍ରଭୁ
ଶକତି ମୋତେ ଦିଅ
ନିରୀହ ମୁହିଁ ମୂରୁଖ ମୁହିଁ
ମୋତେ ବାଟରେ ନିଅ ।୫।
ତୁମ୍ଭରି ଯୋଗୁଁ ଆସିଛି ଧରା
ଯିବି ମୁଁ ଦିନେ ଏକା,
ନ ଚିହ୍ନିଲେ ତୁମ୍ଭକୁ ପରା
ହେବି ନାହିଁ କି ବୋକା ? ।୬।

*ବିଶ୍ୱ ସରକାର, ବିଶ୍ୱ କଲ୍ୟାଣ, ପ୍ରତିରକ୍ଷା ଓ ବିଚାର ବିଭାଗ, ବଡ଼ପାରୀ, ଖୋର୍ଦ୍ଧା, ଓଡ଼ିଶା– ୭୫୨୦୨୩*

---




* ପ୍ରତି ୭୯ ବର୍ଷ ଅନ୍ତରରେ ହ୍ୟାଲିଙ୍କ ଧୂମକେତୁ (Haley's Comet) ଦୃଶ୍ୟମାନ ହୋଇଥାଏ ।
* ଦାସ ବଂଶ (Slave dynasty)ର ଶେଷ ଶାସକ ହେଉଛନ୍ତି କାଇକୁବଦ୍ (Kaiqubad) । (୧୨୮୭-୧୨୯୦ ଖ୍ରୀ.ଅ.) ।
* ୧୯୬୧ ମସିହାରେ ସର୍ବପ୍ରଥମେ ଅର୍ଜୁନ ପୁରସ୍କାର ପ୍ରଦାନ କରାଯାଇଥିଲା ।
* ପ୍ରଥମ ବିଶ୍ୱ ହିନ୍ଦୁ ସମ୍ମିଳନୀ ପ୍ରୟାଗଠାରେ ୧୯୬୬ ମସିହାରେ ଅନୁଷ୍ଠିତ ହୋଇଥିଲା ।
* ସାର୍ ୱାଲ୍ଟର୍ ରାଲେ (Sir Walter Raleigh) ଇଂଲଣ୍ଡରେ ଆଳୁର ପ୍ରଚଳନ କରାଇଥିଲେ ।

ସଂଗ୍ରହ- **ଶ୍ରୀ ଜ୍ୟୋତିରଂଜନ ବିଶ୍ୱାଳ**

# ଧର୍ମ ମାସ

ଶ୍ରୀ ରବୀନ୍ଦ୍ର କୁମାର ବେହେରା

ନୀଳକଣ୍ଠବାବୁ ଅବସର ପରେ ଗାଁ'ରେ ରହିଲେ । ପିତାମାତାଙ୍କର ସେ ଏକମାତ୍ର ପୁତ୍ର । ଶିବଙ୍କ ଆଶୀର୍ବାଦରୁ ପୁତ୍ର ହୋଇଥିବାରୁ ପିତାମାତା ତାଙ୍କର ନାମ 'ନୀଳକଣ୍ଠ' ରଖିଥିଲେ । ପିଲାଦିନୁ ସେ ଶିବଙ୍କୁ ପୂଜା କରନ୍ତି । ସରକାରୀ କ୍ୱାର୍ଟରରେ ଥିବା ସମୟରେ ସେ ପ୍ରତିଦିନ ଶିବ ମନ୍ଦିରକୁ ଯାଆନ୍ତି । ଦୈନିକ ପୂଜାର୍ଚ୍ଚନା ତାଙ୍କର ଏକ ନିତିଦିନିଆ କାମ । ସେଥିପାଇଁ ସେ ଖରାବର୍ଷାକୁ ଖାତିରି କରନ୍ତି ନାହିଁ ।

ତାଙ୍କ ଗାଁ'ରେ ବହୁତ ଦିନର ଏକ ଶିବ ମନ୍ଦିର । ପାତାଳଫୁଟା ଲିଙ୍ଗ । ଆଖପାଖ ଗାଁ'ରେ ମନ୍ଦିରକୁ ନେଇ ବହୁତ ଲୋକକଥା । ସାପକାମୁଡ଼ା ରୋଗୀମାନେ ଏଠାରେ ଭଲହୁଅନ୍ତି ବୋଲି ସେମାନଙ୍କର ବିଶ୍ୱାସ । ପ୍ରତ୍ୟହ ନୀଳକଣ୍ଠବାବୁ ମନ୍ଦିର ଚତୁଃପାର୍ଶ୍ୱ ସଫା କରନ୍ତି । ଶୁଦ୍ଧପୂତ ମନରେ ପୂଜା ସାରି ଘରକୁ ଫେରନ୍ତି । ଏ କାମ ତାଙ୍କର ଦେହସୁହା । ମନ୍ଦିରର ପୂଜକ ନୀଳକଣ୍ଠବାବୁଙ୍କର ଏତାଦୃଶ କାର୍ଯ୍ୟ ନେଇ ଭାରି ଖୁସି । କାରଣ ଏହାଦ୍ୱାରା ତାଙ୍କର କାମ ହାଲୁକା ହୋଇଗଲା । କାମର ବୋଝ କମିଗଲା ।

ଚାହୁଁଚାହୁଁ କାର୍ତ୍ତିକ ମାସ ପହଞ୍ଚିଗଲା । ମାସ ଆରମ୍ଭରୁ ଲୋକଙ୍କର ଭିଡ଼ ଲାଗି ରହିଲା । ବଡ଼ିଭୋରୁ ଲୋକମାନେ ମନ୍ଦିରବେଢ଼ା ସଫା କରି ପୂଜାର୍ଚ୍ଚନା କରିବାରେ ଲାଗିପଡ଼ିଲେ । କିନ୍ତୁ ଏହି ସମୟରେ ନୀଳକଣ୍ଠବାବୁଙ୍କର ଦେଖାସାକ୍ଷାତ ମିଳିଲା ନାହିଁ । ମନ୍ଦିର ପୂଜକ ଆଶ୍ଚର୍ଯ୍ୟ । ଧର୍ମମାସରେ ନୀଳକଣ୍ଠବାବୁ ଅନୁପସ୍ଥିତ ।

କାର୍ତ୍ତିକ ମାସ ସରିଗଲା । ତା'ପରେ ଲୋକଙ୍କ ଗତାଗତ କମିଗଲା । ଲୋକମାନଙ୍କ ଯିବାଆସିବା ପ୍ରାୟତଃ ବନ୍ଦ ହୋଇଗଲା । ପୂର୍ବପରି ଆଉ ମନ୍ଦିର ବେଢ଼ାରେ ଗହଳି ହେଲାନାହିଁ । ମନ୍ଦିରବେଢ଼ା ଅପରିଷ୍କାର ହୋଇଗଲା ।

ଏଥର ନୀଳକଣ୍ଠବାବୁ ହାଜର । ସେ ତାଙ୍କ କାମ ପୂର୍ବପରି ଚାଲୁ ରଖିଲେ । ମନ୍ଦିର ପୂଜକ ତାଜୁବ୍ । ବୁଝିପାରିଲେ ନାହିଁ ଏହାର ରହସ୍ୟ ।

"ନନା, କେବଳ କାର୍ତ୍ତିକମାସରେ ପୂଜା କରିବା ପାଇଁ ଧର୍ମପୁସ୍ତକରେ ଲେଖାଯାଇନାହିଁ । ଧାର୍ମିକ ଦୃଷ୍ଟିକୋଣରୁ ବିଚାର କରି ପୂଜା କରିବା ଏକ ବୋକାମି । ନିଜ କର୍ମ ହେଉଛି ଧର୍ମ । ଏଥିପାଇଁ ନିର୍ଦ୍ଦିଷ୍ଟ ମାସର ଆବଶ୍ୟକତା ନାହିଁ । ଲୋକମାନେ ପୁଣ୍ୟ ଅର୍ଜନ ଲୋଭରେ କେବଳ କାର୍ତ୍ତିକମାସରେ ମନ୍ଦିର ବେଢ଼ା ସଫା କରୁଥିଲେ । ଏବେ ସଫା କଲେ କ'ଣ ପୁଣ୍ୟଫଳ ମିଳିବ ନାହିଁ ? ମନ ସଫା ରଖିବା ଜଣେ ପ୍ରକୃତ ଭକ୍ତର ଲକ୍ଷଣ । ଏଥିପାଇଁ ଏକ ନିର୍ଦ୍ଦିଷ୍ଟ ମାସ ଚୟନ କରିବା ଲୋକ-ଦେଖାଣିଆ । ଏକ ଅନ୍ଧବିଶ୍ୱାସ । ସବୁ ମାସ ଧର୍ମ ମାସ ।" ନୀଳକଣ୍ଠବାବୁ ପୂଜକଙ୍କୁ ବୁଝାଇ କହିଲେ ।

ଏଥର ପୂଜକମହାଶୟ ନୀଳକଣ୍ଠବାବୁ ମନ୍ଦିରକୁ ନ ଆସିବାର କାରଣ ବୁଝିଗଲେ ।

*କଳିଙ୍ଗ ନୋଡ଼ାଲ୍ ଉ:ପ୍ରା: ବିଦ୍ୟାଳୟ, ଚୌଦ୍ୱାର, କଟକ*

# ଅାକୁହା କଥା

ଶାନ୍ତି ସାମଲ

ଜଣେ ଗୋଣ୍ଡ ଚାଷୀ ତାଙ୍କର ମୂଲିଆକୁ ସାଙ୍ଗରେ ନେଇ ଥରେ ଗୋଟିଏ ଦୂର ଗାଁକୁ ଯାଉଥିଲେ । ସେଇ ଦୂର ଗାଁରେ ତାଙ୍କର ପୁଅ, ବୋହୂ ରହୁଥିଲେ । ବାଟରେ ଗୋଟିଏ ଧର୍ମଶାଳାରେ ସେମାନେ ରାତିରେ ରହିଲେ । ରାତିର ଖାଇ ସାରିଲା ପରେ ସେମାନେ ଶୋଇବାର ବ୍ୟବସ୍ଥା କଲେ । ମୂଲିଆଟି ଜାଣିଥିଲା ତାର ମାଲିକ ଚାରିଟା ଗପ ଜାଣିଥିଲେ । ସେଥିପାଇଁ ମୂଲିଆ ମାଲିକଙ୍କୁ କହିଲା ଗୋଟିଏ ଦୁଇଟି ଗପ କହିବାକୁ । ମାଲିକ କ୍ଲାନ୍ତ ଥିଲେ ଓ ତାଙ୍କୁ ନିଦ ମାଡୁଥିଲା । ସେ ଗପ ନ କହି ଶୋଇପଡ଼ିଲେ । ମୂଲିଆକୁ ନିଦ ହେଉ ନ ଥାଏ । ସେ ଏକଡ଼ସେକଡ଼ ହୋଇ ଓଲଟପାଲଟ ହେଉଥାଏ ।



ଗୋଣ୍ଡଚାଷୀଟି ଯେତେବେଳେ ନିଘୋଡ଼ ନିଦରେ ଶୋଇ ପଡ଼ିଲେ, ଚାରୋଟି ଗପ ତାଙ୍କର ପେଟ ଭିତରୁ ବାହାରିଆସି ତାଙ୍କ ପିଠି ଉପରେ ବସି ନିଜ ନିଜ ମଧ୍ୟରେ ଗପସପ ହେଲେ ଯେ,''ଏଇ ଗୋଣ୍ଡଚାଷୀ ତାର ପିଲାଦିନରୁ ଆମ ବିଷୟରେ ସବୁ ଜାଣିଛି । ସେ କିନ୍ତୁ ଆମ ବିଷୟରେ କାହାକୁ କିଛି କହୁନି । ଆମେ ଚାରିଗପ କାହିଁକି ତା'ର ପେଟ ଭିତରେ ସଡ଼ିବୁ? ଆମେ ତାକୁ ମାରିଦେଇ ଆଉ କାହାର ପେଟରେ ରହିବା ।'' ମୂଲିଆ ଏମାନଙ୍କ କଥା ଶୁଣି ନିଦରେ ଶୋଇବାର ବାହାନା କରି ନିସ୍ତେଜ ଭାବରେ ପଡ଼ିରହିଲା ବିଛଣାରେ ।

ପ୍ରଥମ ଗପ କହିଲା, "ଯେତେବେଳେ ଗୋଣ୍ଡ ତାର ପୁଅ ଘରେ ଖାଇବାକୁ ବସିବ, ମୁଁ ସେତେବେଳେ ତାର ଭାତରେ ମେଞ୍ଚାଏ ଛୁଞ୍ଚି ରୂପରେ ରହିଯିବି । ସେ ଭାତ ଖାଇଲେ ଛୁଞ୍ଚି ସବୁ ତାର ତଣ୍ଟି, ପେଟ କଣା କରିଦେବ ଓ ସେ ମରିଯିବ ।"

ଦ୍ୱିତୀୟ ଗପ କହିଲା,"ଯଦି ଗୋଣ୍ଡ ଛୁଞ୍ଚି ଆଘାତରୁ ବଞ୍ଚିଗଲା, ସେ ପୁଅ ଘରୁ ଫେରିବା ବାଟରେ ମୁଁ ଗୋଟିଏ ବଡ଼ଗଛ ହୋଇ ବାଟରେ ରହିଥିବି । ଗୋଣ୍ଡ ସେହି ରାସ୍ତାରେ ଯିବା ସମୟରେ ଗଛଟି ଭାଙ୍ଗିଯାଇ ତା' ଉପରେ ପଡ଼ିବ ଓ ସେ ମରିଯିବ ।"

ତୃତୀୟ ଗପ କହିଲା, "ଯଦି ଗୋଣ୍ଡ ଗଛ ଆଘାତରୁ ବଞ୍ଚିଗଲା, ମୁଁ ସାପ ରୂପରେ ଯାଇ ତାକୁ ମାରିଦେବି ।"

ଚତୁର୍ଥ ଗପ କହିଲା,"ଯଦି ସାପ ତାକୁ କାମୁଡ଼ି ନ ପାରେ, ସେ ନଈ ପାରି ହେଉଥିବାବେଳେ ମୁଁ ବଡ଼ ଢେଉଟିଏ ହୋଇ ତାକୁ ପାଣିରେ ବୁଡ଼ାଇ ମାରିଦେବି ।"

ପରଦିନ ଗୋଣ୍ଡ ଓ ମୂଲିଆ ତାର ପୁଅ ଘରେ ପହଞ୍ଚିଲେ । ସେଠାରେ ସେମାନେ ଧୁଆଧୋଇ ହୋଇ ଖାଇବାକୁ ବସିଲେ । ପୁଅବୋହୂ ଗୋଣ୍ଡକୁ ଆଗ ଖାଇବାକୁ ଦେଲେ । ମୂଲିଆ ତାଙ୍କ ପାଖରେ ବସିଥାଏ । ଗୋଣ୍ଡ ଯେତେବେଳେ ପ୍ରଥମଥର ଭାତ ପାଟିକୁ ନେବା ପାଇଁ ବାହାରିଲେ, ମୂଲିଆ ତାଙ୍କ ହାତକୁ ଧରିନେଇ କହିଲେ– ଏଇ ଭାତ ଗୁଣ୍ଡାରେ ଗୋଟିଏ ପୋକ ଦେଖିଲି । ଗୋଣ୍ଡ ଭାତଗୁଣ୍ଡାକୁ ତଳେ ପକାଇଦେଲେ । ସମସ୍ତେ ଦେଖିଲେ ଭାତ ଭିତରେ କିଛି ଛୁଞ୍ଚି ରହିଛି ।



ସେମାନେ ତା' ପରଦିନ ପୁଅଘରୁ ନିଜ ଘରକୁ ଫେରିଆସିଲେ । ରାସ୍ତାରେ ସେମାନେ ଦେଖିଲେ ଗୋଟିଏ ବଡ଼ ଗଛ ରାସ୍ତା ଉପରକୁ ନଇଁ ପଡ଼ିଛି । ଗୋଣ୍ଡ ମାଲିକର ହାତ ଧରି ମୂଲିଆଟି ଦୌଡ଼ି ଦୌଡ଼ି ସେଇ ଗଛ ଜାଗାଟିକୁ ପାରି ହୋଇଗଲେ । ପାରି ହେବା ପରେ ଗଛଟି ରାସ୍ତା ଉପରେ ପଡ଼ିଗଲା । କିଛି ବାଟ ଯିବା ପରେ ରାସ୍ତାରେ ସାପଟିଏ ଦେଖିବାକୁ ପାଇ ମୂଲିଆଟି ସାପକୁ ବାଡ଼େଇ ବାଡ଼େଇ ମାରିଦେଲା । ନଈ ପାରି ହେବା ସମୟରେ ବଡ଼ ଢେଉଟିଏ ଉଠିବା ସଙ୍ଗେ ସଙ୍ଗେ ମୂଳିଆଟି ଗୋଣ୍ଡକୁ ଟାଣି ଟାଣି ନେଇ କୂଳରେ ପହଞ୍ଚାଇଦେଲା ।



ନଈକୂଳରେ ଗୋଣ୍ଡ ଓ ମୂଲିଆ କିଛି ସମୟ ବିଶ୍ରାମ କଲେ । ସେଇ ସମୟରେ ଗୋଣ୍ଡ ତା'ର ମୂଲିଆକୁ କହିଲା, "ତୁ ମୋତେ ଚାରିଥର ମୃତ୍ୟୁମୁଖରୁ ରକ୍ଷାକଲୁ । ତୁ କ'ଣ ଏ ବିଷୟରେ ଜାଣିଥିଲୁ ? ନ ଜାଣିଥିଲେ ତୁ ହଠାତ୍ ଏତେସବୁ ସୁବିଧା କରି କିପରି ମୋତେ ବଞ୍ଚାଇ ପାରିଲୁ ? କ'ଣ ଓ କିପରି ତୁ ଏ ବିଷୟରେ ଜାଣିଲୁ ମୋତେ କହ ।" ମୂଲିଆଟି କହିଲା, "ମୁଁ ଯଦି ତୁମକୁ ସେ ସବୁ କହିବି, ମୁଁ ପଥର ପାଲଟିଯିବି । ତମେ ଈଶ୍ୱରଙ୍କ ଦୟାରୁ ବଞ୍ଚିଯାଇଛ, ତାହା ହିଁ ବଡ଼ କଥା । ମୁଁ କ'ଣ ଓ କେମିତି ଜାଣିଲି, ସେସବୁ ଆଲୋଚନା ନ କରିବା ଭଲ ।'' ଗୋଣ୍ଡ କହିଲା, "ମଣିଷ କଥା କହି କେବେ ପଥର ହେବନି । ତୁ ମୋତେ ପ୍ରକୃତ କଥା କହ । ମୁଁ ଭବିଷ୍ୟତ ପାଇଁ ସାବଧାନ ହେବି ।"

ମୂଲିଆ କହିଲା, "ଠିକ୍ ଅଛି, ମୁଁ ତୁମକୁ ସବୁ ବିଷୟ କହୁଛି । କହିବା ପରେ ମୁଁ ନିଶ୍ଚୟ ପଥର ହୋଇ-ଯାଇଥିବି । ତମେ ତମର ବୋହୂର ପିଲାକୁ ସେଇ ପଥର ଉପରେ କଚାଡ଼ିଦେଲେ ମୁଁ ପୁଣି ମଣିଷ ହୋଇଯିବି ।"

ମୂଲିଆଟି ଗପମାନଙ୍କ ବିଷୟରେ ମାଲିକକୁ ସବୁ କଥା କହିଲା । କଥା ସରିବା ପରେ ପରେ ମୂଲିଆଟି ସଙ୍ଗେ ସଙ୍ଗେ ପଥର ହୋଇଗଲା । କିନ୍ତୁ ଗୋଣ୍ଡ ଏତେ ସ୍ୱାର୍ଥପର ଯେ ସେ ମୂଲିଆ ବିଷୟରେ କିଛି ଚିନ୍ତା ନ କରି ସେ ପଥରକୁ ସେଠାରେ ଛାଡ଼ିଦେଇ ନିଜ ଘରକୁ ଚାଲିଗଲା ।

କଥାରେ କଥାରେ କିଛିଦିନ ପରେ ଗୋଣ୍ଡର ବୋହୂ ମୂଲିଆର ପଥର ହୋଇଯିବା ଓ ତାର ପିଲାକୁ ସେଇ ପଥରରେ କଚାଡ଼ିଲା ପରେ ସେ ମଣିଷ ହୋଇପାରିବ, ଏଇ ବିଷୟରେ ଜାଣିବାକୁ ପାଇଲା । ଗୋଣ୍ଡର ବୋହୂ ନିଜ ଶ୍ୱଶୁରଙ୍କ ସ୍ୱାର୍ଥପରତା ଦେଖି ଦୁଃଖୀ ହୋଇଗଲା । ସେ ସୁବିଧା କରି ପଥର ପାଖକୁ ଯାଇ ପିଲାକୁ ପଥର ଉପରେ କଚାଡ଼ିଦେଲା । ସଙ୍ଗେ ସଙ୍ଗେ ମୂଲିଆଟି ପଥରରୁ ମଣିଷ ହୋଇଗଲା । (ଲୋକକଥା)

*ଅରୁଣୋଦୟ ନଗର, କଟକ- ୧୨*

# ଚୋର ଓ ସାଧୁ

ଡଃ ବିଜୟ ଚନ୍ଦ୍ର ମହାରଣା

ଏକ ଗାଁରେ ରହୁଥିଲା ଚୋରଟିଏ । ସେ ସମସ୍ତଙ୍କ ଘରୁ ଚୋରି କରୁଥାଏ । ଦିନେ ଚୋରି କରିବା ସମୟରେ ଗାଁ ଲୋକ ଧରି ପକାଇ ଉତ୍ତମ-ମଧ୍ୟମ ଦେଲେ । ତା'ପରେ ଚୋରଟି ଗାଁ ଛାଡ଼ି ଚାଲିଗଲା । ବିଚାରା ଚୋର ଜଙ୍ଗଲକୁ ଯାଇ କୁଡ଼ିଆଟିଏ କରି ରହିଲା । ହେଲେ ଚୋରି ଅଭ୍ୟାସ ତାହାର ଗଲାନାହିଁ । ଆଖପାଖ ଗାଁରେ ଚୋରି କରି ଧରା ପଡୁଥିଲା । ରାଜାଙ୍କ ସିପାହୀମାନେ ତାକୁ ବାନ୍ଧି ନେଉଥିଲେ । କିଛିଦିନ ଜେଲରେ ରହିବା ପରେ ପୁଣି ଫେରୁଥିଲା ।

ଦିନକର ଘଟଣା । ଦିନେ ସହରକୁ ଯାଇ ଘୋଡ଼ାଟିଏ ଚୋରି କରି ଜଙ୍ଗଲକୁ ଫେରୁଥାଏ । ବାଟରେ ଦେଖିଲା ସାଧୁ ଜଣେ ଅସହାୟ ଅବସ୍ଥାରେ ବାଟରେ ପଡ଼ିଛନ୍ତି । ତେଣୁ ସେ ସାଧୁଙ୍କୁ ଉଠାଇ ଘୋଡ଼ାରେ ବସାଇ ନେଇଗଲା, କିଛି ସମୟ ପରେ ହଠାତ୍ ସାଧୁ ଲୁଗା ତଳୁ ଏକ ଧାରୁଆ ଖଣ୍ଡା ବାହାର କରି ଚୋରକୁ ଚୋଟଟିଏ ପକାଇଲେ, ଚୋରଟି ଆକ୍ରମଣରେ ଗୁରୁତର ହୋଇ ତଳେ ପଡ଼ିଗଲା । ସାଧୁ କହିଲେ, '' ତୁ ଏତେ ମୂର୍ଖ ବୋଲି ମୁଁ ଏବେ ଜାଣିଲି, ତୁ ପରା ଗୋଟିଏ ଚୋର । ତୁ ଆଉ ଗୋଟିଏ ଚୋରକୁ ଚିହ୍ନିପାରିଲୁ ନାହିଁ ?'' ଚୋର କହିଲା,''ତୁମେ ସାଧୁ ବେଶରେ ଅଛ । ତୁମକୁ ମୁଁ କେମିତି ଚିହ୍ନିବି ? ମୁଁ ଜଣେ ଚୋର ଭାବରେ ଖଣ୍ଡମଣ୍ଡଳରେ ଜଣାଶୁଣା । ତେଣୁ ତୁମେ ମୋତେ ଜାଣିଛ । ଏବେ ମୋର ଗୋଟିଏ ଅନୁରୋଧ ରକ୍ଷାକର, ତୁମେ ଆଉ ସାଧୁ ବେଶ ଧରି ଚୋରି କରନା । କାରଣ ସେମିତି ହେଲେ ସାଧୁମାନେ ଲୋକଙ୍କ ବିଶ୍ୱାସ ହରାଇବେ । ଦ୍ୱିତୀୟରେ- ଏମିତି ହେଲେ ଅସହାୟ ଅବସ୍ଥାରେ ପଡ଼ିଥିବା ଲୋକଙ୍କୁ କେହି ସାହାଯ୍ୟ କରିବାକୁ ଆସିବେ ନାହିଁ ।''

ସାଧୁବେଶୀ ଚୋର ଏଥର ସମାଜରେ ପ୍ରତିଷ୍ଠିତ ତଥାକଥିତ ଭଣ୍ଡବାବାଙ୍କ କଥା ମନେପକାଇଲା ।

*ବାଲିପଦର, ଗଂଜାମ-୭୬୧୧୧୭*

---



୧୯୭୦ ମସିହାରେ ଜନ୍ମଗ୍ରହଣ କରିଥିବା ଭାରତୀୟ ମହିଳା ସନ୍ତରଣକାରିଣୀ ବୁଲା ଚୌଧୁରୀ ଜିବ୍ରାଲ୍ଟର୍ କେନାଲ୍ (Gibraltar Canal) କୁ ଅତି ଦ୍ରୁତ ଗତିରେ ପାର ହୋଇଯାଇଥିଲେ । ଦାରିବା (Dariba) ଠାରୁ ମରକ୍କୋ ପର୍ଯ୍ୟନ୍ତ ୩୦ କିଲୋମିଟର ଦୂରତାକୁ ସେ ୩ଘଣ୍ଟା ୪୫ ମିନିଟ୍ ଏବଂ ବାର ସେକେଣ୍ଡରେ ଅତିକ୍ରମ କରିଥିଲେ ।

# ମହାନ୍ ଦାନୀ ମହାରାଜା ରଘୁ

ଶ୍ରୀ ନରେଶ ଚନ୍ଦ୍ର ବେହେରା

ଅଯୋଧ୍ୟାର ସମ୍ରାଟ୍ ଥିଲେ ମହାରାଜା ରଘୁ । ଥରେ ମହାରାଜା ରଘୁ ଏକ ଯଜ୍ଞର ଆୟୋଜନ କଲେ । ଯଜ୍ଞ ଶେଷ ହେବା ପରେ ମହାରାଜା ବ୍ରାହ୍ମଣ, ଦୀନ, ଦୁଃଖୀମାନଙ୍କୁ ନିଜର ସମସ୍ତ ଧନ ଦାନ କରିଦେଲେ । ନିଜର ଆଭୂଷଣ, ସୁନ୍ଦର ବସ୍ତ୍ର, ମୂଲ୍ୟବାନ ବାସନକୁସନ ଦାନ କରିବାକୁ ମଧ୍ୟ ସେ ଭୁଲି ନ ଥିଲେ । କେତେଖଣ୍ଡ ସାଧାରଣ ବସ୍ତ୍ରକୁ ମହାରାଜା ପରିଧାନ କରି ମାଟିପାତ୍ରରେ ଖାଦ୍ୟ-ପାନୀୟର ବ୍ୟବସ୍ଥା କଲେ । ସମସ୍ତ ସମ୍ପତ୍ତିକୁ ଦାନ ଦେଇଥିଲେ ମଧ୍ୟ ତାଙ୍କ ମନରେ ଟିକିଏ ହେଲେ ଦୁଃଖ ନ ଥିଲା । ସେ ସର୍ବଦା ପ୍ରସନ୍ନ ଥାଆନ୍ତି ।

ମହାରାଜା ରଘୁ ସର୍ବସ୍ୱ ଦାନ କରିସାରିବା ପରେ କୌତ୍ସ ନାମକ ଜଣେ ବ୍ରାହ୍ମଣ ଯୁବକ ଆସି ପହଞ୍ଚିଲେ । ତାଙ୍କୁ ଦେଖି ମହାରାଜା ରଘୁ ପ୍ରଣାମ କରି ସସମ୍ମାନ ଆସନ ଦେଇ ବସାଇଲେ । ହାତଯୋଡ଼ି ଆସିବାର ଅଭିପ୍ରାୟ ପ୍ରକାଶ କରିବାକୁ ଅନୁରୋଧ କଲେ । କୌତ୍ସ ମହାରାଜାଙ୍କୁ କହିଲେ, "ହେ ରାଜନ୍ ! ମୁଁ ଏକ କାର୍ଯ୍ୟ ପାଇଁ ଆପଣଙ୍କ ନିକଟକୁ ଆସିଥିଲି । କିନ୍ତୁ ଆପଣ ତ ସର୍ବସ୍ୱ ଦାନ କରିସାରିଲେଣି, ତେଣୁ ଆପଣଙ୍କୁ ଆଉ ଧର୍ମସଙ୍କଟରେ ପକାଇବାକୁ ମୁଁ ଚାହୁଁନାହିଁ ।"

ଆଗନ୍ତୁକ ବ୍ରାହ୍ମଣ ଯୁବକଙ୍କ କଥା ଶୁଣି ମହାରାଜା ରଘୁ ବିନମ୍ର ହୋଇ କହିଲେ, "ହେ ବ୍ରାହ୍ମଣ ଦେବତା ! ଆପଣ କେଉଁ କାର୍ଯ୍ୟ ପାଇଁ ଆସିଛନ୍ତି, ତାହା ସଙ୍କୋଚ ନ କରି ପ୍ରକାଶ କରନ୍ତୁ । ମୋର ସାଧ ଅନୁସାରେ ମୁଁ ସହାୟତା କରିପାରିବି ।''

କୌତ୍ସ କହିଲେ, "ହେ ମହାରାଜ ! ମୁଁ ଗୁରୁକୁଳର ଶିକ୍ଷା ସମାପ୍ତ କରି ଆସିଛି; କିନ୍ତୁ ଆଶ୍ରମରୁ ଆସିବା ସମୟରେ ଗୁରୁଦକ୍ଷିଣା ଦେବା ପାଇଁ ଗୁରୁଙ୍କୁ ପ୍ରାର୍ଥନା କଲି । ମୋ କଥା ଶୁଣି ଗୁରୁଦେବ କହିଲେ- ବତ୍ସ ! ତୁମେ ଏଠାରେ ରହି ମୋର ଯେଉଁ ସେବା କରିଛ, ମୁଁ ସେଥିରେ ଅତ୍ୟନ୍ତ ପ୍ରସନ୍ନ । ତାହା ହିଁ ମୋର ଗୁରୁଦକ୍ଷିଣା । ତୁମେ ସଙ୍କୋଚ ନ କରି ଖୁସି ମନରେ ଘରକୁ ବାହୁଡ଼ିଯାଅ; କିନ୍ତୁ ମନ ମୋର ମାନିଲା ନାହିଁ । ମୁଁ ଗୁରୁଦକ୍ଷିଣା ଦେବା ପାଇଁ ଅଳି କଲି ।

ସେଥିରେ ଗୁରୁଦେବ ସାମାନ୍ୟ କ୍ରୋଧିତ ହୋଇ କହିଲେ- "ତୁମେ ମୋ'ଠାରୁ ଚତୁର୍ଦ୍ଦଶ ବିଦ୍ୟା ପ୍ରାପ୍ତ କରିଛ । ତେଣୁ ପ୍ରତ୍ୟେକ ବିଦ୍ୟା ନିମନ୍ତେ ଏକକୋଟି ସ୍ୱର୍ଣ୍ଣମୁଦ୍ରା ଆଣି ଦିଅ । ମହରାଜ, ମୁଁ ସେହି ସ୍ୱର୍ଣ୍ଣମୁଦ୍ରା ପାଇବା ଆଶାରେ ଆପଣଙ୍କ ନିକଟକୁ ଆସିଥିଲି ।"

ମହରାଜା ରଘୁ ବ୍ରାହ୍ମଣ ଯୁବକ କୌତ୍ସଙ୍କ କଥା ଶୁଣି କହିଲେ, "ଆପଣ ମୋ ପାଖକୁ ଆସି ମୋତେ

ଅନୁଗୃହୀତ କରିଛନ୍ତି । ତେଣୁ ଆଉ ଟିକିଏ ଅନୁଗ୍ରହ କରି ଆପଣ ଏଠାରେ ତିନିଦିନ ରୁହନ୍ତୁ । ମୁଁ ଆପଣଙ୍କ ଗୁରୁଦକ୍ଷିଣାର କୌଣସି ନା କୌଣସି ବ୍ୟବସ୍ଥା କରିଦେବି ।” ମହରାଜାଙ୍କ କଥା ଶୁଣି କୌତ୍ସ ରହିବା ପାଇଁ ନିଜର ସମ୍ମତି ପ୍ରଦାନ କଲେ ।

ମହରାଜା ରଘୁ ନିଜର ମନ୍ତ୍ରୀଙ୍କୁ ଡକାଇ କହିଲେ, “ଆମର ସମସ୍ତ ସାମନ୍ତରାଜା କର ଦେଇସାରିଛନ୍ତି, ତାଙ୍କୁ ପୁନଶ୍ଚ ଆଉ ମାଗିବା ଅନ୍ୟାୟ ହେବ; କିନ୍ତୁ କୁବେର ମୋତେ କେବେ କର ଦେଇନାହାନ୍ତି । ପୃଥିବୀର ଚକ୍ରବର୍ତ୍ତୀ ସମ୍ରାଟଙ୍କୁ କର ଦେବା ଉଚିତ । ସେ ତ କୈଳାସରେ ରହୁଛନ୍ତି । କର ଦେବାରୁ ସେ କାହିଁକି ବାଦ୍ ପଡ଼ିବେ ? ଆପଣ ମୋ ରଥରେ ସମସ୍ତ ଅସ୍ତ୍ରଶସ୍ତ୍ର ରଖିଦିଅନ୍ତୁ । ମୁଁ କାଲି ପ୍ରାତଃ ସମୟରେ କୁବେରଙ୍କ ଉପରେ ଆକ୍ରମଣ କରିବି । ଆଜି ରାତିରେ ମଧ୍ୟ ମୁଁ ସେହି ରଥରେ ଶୟନ କରିବି । ଯେ ପର୍ଯ୍ୟନ୍ତ ବ୍ରାହ୍ମଣ ଯୁବକ ଗୁରୁଦକ୍ଷିଣା ପାଇ ନାହାନ୍ତି, ସେ ପର୍ଯ୍ୟନ୍ତ ମୁଁ ରାଜପ୍ରାସାଦକୁ ଯିବିନାହିଁ ।”

ପ୍ରାତଃ ସମୟ । ମହରାଜା ଯୁଦ୍ଧକୁ ଯିବା ପାଇଁ ପ୍ରସ୍ତୁତ ହେଉଥାଆନ୍ତି । ଏହି ସମୟରେ ତାଙ୍କ କୋଷାଧ୍ୟକ୍ଷ ଧାଇଁ ଧାଇଁ ଆସି କହିଲେ, “ମହାରାଜ ! ଭଣ୍ଡାରଗୃହ ସ୍ୱର୍ଣ୍ଣମୁଦ୍ରାରେ ପୂର୍ଣ୍ଣ ହୋଇଯାଇଛି । ରାତିସାରା ସ୍ୱର୍ଣ୍ଣମୁଦ୍ରା ବୃଷ୍ଟି ହୋଇଛି ।’’

କୋଷାଧ୍ୟକ୍ଷଙ୍କ କଥା ଶୁଣି ମହାରାଜା ରଘୁ ବୁଝିଗଲେ ଯେ ଏସବୁ କୁବେର କରିଛନ୍ତି । ସେ ବ୍ରାହ୍ମଣ ଯୁବକଙ୍କୁ ସବୁ ସ୍ୱର୍ଣ୍ଣମୁଦ୍ରା ନେଇଯିବା ପାଇଁ କହିଲେ ।

ମହାରାଜାଙ୍କ କଥା ଶୁଣି କୌତ୍ସ କହିଲେ, “ହେ ରାଜନ୍ ! ମୋର ମାତ୍ର ଚଉଦକୋଟି ମୋହର ଆବଶ୍ୟକ । ମୁଁ ସେଥିରୁ ଗୋଟିଏ ହେଲେ ଅଧିକ ନେବାକୁ ଚାହୁଁନାହିଁ ।”

“ଏ ସବୁ ଧନ ତ ଆପଣଙ୍କ ପାଇଁ ଆସିଛି ! ବ୍ରାହ୍ମଣଙ୍କ ଧନ ମୁଁ କେମିତି ରଖିବି ? ସବୁ ଧନ ଆପଣଙ୍କୁ ନେବାକୁ ହେବ ।” ବିନମ୍ର ସହ ଏକଥା ମହାରାଜା ରଘୁ ବ୍ରାହ୍ମଣ ଯୁବକଙ୍କୁ କହିଲେ ।

କୌତ୍ସ ପୁନଶ୍ଚ କହିଲେ, “ମହାରାଜ ! ମୁଁ ବ୍ରାହ୍ମଣ । ଧନ ମୋର କ’ଣ ହେବ ? ମୋର ପ୍ରାପ୍ୟ ଧନଠାରୁ ମୁଁ ଗୋଟିଏ ହେଲେ ଅଧିକ ନେବି ନାହିଁ ।” କୌତ୍ସ ଚଉଦ କୋଟି ସ୍ୱର୍ଣ୍ଣମୁଦ୍ରା ନେଇ ଚାଲିଗଲେ ।

ମହାରାଜା ରଘୁ ଅବଶିଷ୍ଟ ସ୍ୱର୍ଣ୍ଣମୁଦ୍ରାକୁ ଅନ୍ୟ ବ୍ରାହ୍ମଣମାନଙ୍କୁ ଦାନ କରିଦେଲେ । ତାଙ୍କର ଏହି ଦାନ ପାଇଁ ଯୁଗ ଯୁଗକୁ ସେ ଅମର ହୋଇ ରହିଗଲେ ‘ମହାନ୍ ଦାନୀ ମହାରାଜା ରଘୁ’ ।

*କାଳିଆସୁନା ନିବାସ, ଉତ୍ତରପଡ଼ା, ଅନୁଗୁଳ- ୭୫୯୧୨୨*

---

## ଜୀବଜଗତର କେତେକ ଅଜଣା କଥା



ଜିରାଫ ରାତିରେ ମାତ୍ର ୨ଘଣ୍ଟା ପାଇଁ ଶୋଇଥାଏ ।



କାଉ କେବେ ବି କୌଣସି ଚେହେରା ଭୁଲେ ନାହିଁ ।

ସଂଗ୍ରହ : **ଶ୍ରୀ ପ୍ରତାପ ଚନ୍ଦ୍ର ଭଞ୍ଜ**

# ମୁଁ ଯଦି ହେବି ଭଲପିଲା

ଶ୍ରୀ ବ୍ରଜକିଶୋର ପ୍ରଧାନ

*ସରସ୍ୱତୀ ଶିଶୁ ବିଦ୍ୟା ମନ୍ଦିର, ଅଡ଼ଶପୁର*

ମୁଁ ଯଦି ହେବି ଭଲପିଲା
ଆଗ ସଜାଡ଼ିବି ନିଜକୁ,
ରହିବି ନିଜେ ସଫାସୁତୁରା
ତା'ପରେ କହିବି ଆନକୁ ।
ମିଛ କଥାକୁ ମୁଁ କହିବି ନାହିଁ
ଯେତେ ଯାହା ହେଉ ଜୀବନେ,
ସତ୍ୟର ପଥ ବହୁତ କଷ୍ଟ
ତଥାପି ଚାଲିବି ଯତନେ ।
ନିଜେ ସତ୍ୟବାଦୀ ହୋଇଲେ ମୁଁ
ଦେବି ଉପଦେଶ କାହାକୁ,
ନିଜେ କହୁଥିଲେ ଅଠର ମିଛ
କିଏ ଶୁଣିବ ମୋ କଥାକୁ ?
କାହାରି ମନରେ କଷ୍ଟ ଦେବିନି
କହିବି ନାହିଁ ମୁଁ ଅକଥା,
ବିନୟ ମଧୁର ବଚନ କହି
ଗୁରୁଜନେ ନୋଇଁବି ମଥା ।
ଶାନ୍ତି ଦୟା କ୍ଷମା ଆଚରିବି ମୁଁ
ଜୀବନରେ ଶ୍ରେଷ୍ଠ ବରତ,
ପର ଉପକାର ପର ସେବା କରି
ବିତୁ ମୋ ଜୀବନ ସତତ ।
ପର ନିନ୍ଦା ପର ମନ୍ଦ ଆଲୋଚନା
କେବେ ନ କରିବି ମୁହିଁ,
କଟୁକଥା କହି ବିନା କାରଣରେ
କଷ୍ଟ ମୁଁ ଦେବି ନାହିଁ ।
ସକାଳ ସଂଜରେ ବିଭୁଙ୍କ ପାଦରେ
ନୁଆଁଉଥିବି ମୋ ମଥା,
ପ୍ରଭୁଙ୍କ ଚିନ୍ତନ ଅମୃତ ସମାନ
ହରିନେବ ସବୁ ବ୍ୟଥା ।
ନିଜେ ଭଲପିଲା ହୋଇଲେ ମୁହିଁ ତ
ଦୁନିଆଁ ହୋଇବ ଭଲ,
ଅବାଟରେ ଗଲେ ବାଟ ହୁଡୁଥିଲେ
ଭଲ ହୋଇଯିବ ଭେଲ । ❖❖

---

## ଭାରତର ପ୍ରଧାନମନ୍ତ୍ରୀ

| *ନାମ* | *କେତେ ବୟସରେ ହେଲେ* | *କେତେ ସମୟ ପାଇଁ* | *କେଉଁ ରାଶି* |
|---|---|---|---|
| ଜଓ୍ୱାହରଲାଲ ନେହେରୁ, ଆହ୍ଲାବାଦ୍, ୟୁପି | ୫୭ବର୍ଷ | ୧୭ ବର୍ଷ | କର୍କଟ |
| ଗୁଲ୍‌ଜାରୀଲାଲ ନଂଦା, ସିଆଲକୋଟ୍ (ପାକିସ୍ତାଁ) | ୬୫ | ୦୧ ମାସ | ବୃଷ |
| ଲାଲବାହାଦୁର ଶାସ୍ତ୍ରୀ, ମୁଗଲସରାଇ, ୟୁପି | ୫୯ | ୧.୫ ମା | ମିଥୁନ |
| ଇନ୍ଦିରାଗାନ୍ଧୀ, ଆହ୍ଲାବାଦ୍, ୟୁପି | ୪୮ | ୧୬ ବର୍ଷ | କର୍କଟ |
| ମୋରାରଜୀ ଦେଶାଇ, ବାହାଦେଶଲି, ଗୁଜୁରାତ | ୮୧ | ୨.୫ ମାସ | ମୀନ |
| ଚରଣ ସିଂହ, ନୂରପୁର, ବିଜନର, ୟୁପି | ୭୬ | ୦୮ ମାସ | ମକର |
| ଭି.ପି ସିଂହ, ଆହ୍ଲାବାଦ୍, ୟୁପି | ୫୮ | ୧୧ ମାସ | କର୍କଟ |
| ଚନ୍ଦ୍ରଶେଖର, ଇବ୍ରାହିମ ପଟି, ବାଲିଆ, ୟୁପି | ୬୩ | ୦୮ ମାସ | କର୍କଟ |
| ରାଜୀବଗାନ୍ଧୀ, ମୁମ୍ବାଇ, ମହାରାଷ୍ଟ୍ର | ୪୦ | ୫ ବର୍ଷ | ସିଂହ |

*(ଅବଶିଷ୍ଟ ୪୪ ପୃଷ୍ଠାରେ)*

# ରାଷ୍ଟ୍ରପ୍ରେମୀ ମାଧୁରୀ

ଶ୍ରୀ ନାମଯଜ୍ଞ ମିଶ୍ର

ଦକ୍ଷିଣ କୋଶଳ ରାଜ୍ୟର ଦୁଇଟି ପ୍ରଧାନ ପର୍ବକୁ ରାଜା ପ୍ରଜା ସଭିଏଁ ମିଶି ପାଳନ କରନ୍ତି । ତନ୍ମଧ୍ୟରୁ ଗୋଟିଏ ହେଲା ଅକ୍ଷୟ ତୃତୀୟାରେ 'ବୀଜବପନ' ପର୍ବ ଓ ଅନ୍ୟଟି ହେଲା 'ନବାନ୍ନ ଭକ୍ଷଣ' ପର୍ବ ।

ବୀଜବପନ ପର୍ବ ସମୟରେ ଗୋଟିଏ ଉତ୍ତମ କ୍ଷେତ୍ର ବଛାଯାଇ ଶିଙ୍ଗରେ ସ୍ୱର୍ଣ୍ଣଖଚିତ ବଳଦ ଦୁଇଟିଙ୍କୁ ଯୋଡ଼ି ସୁନା ଲଙ୍ଗଳରେ ମହାରାଜା ଜମି ଚଷନ୍ତି ଓ କ୍ଷେତ ମାଲିକ ସୁନାଥାଳିରେ ଧାନ ଧରି ମୁଠା ମୁଠା ଧାନ ରାଜାଙ୍କ ହାତକୁ ଦିଏ ଓ ରାଜା ବିହନ ବୁଣନ୍ତି । ପରେ ଆନନ୍ଦଉତ୍ସବ ସହ ସମସ୍ତଙ୍କୁ ଦିବ୍ୟଭୋଜନ ପରଶାଯାଏ । ଉପରୋକ୍ତ ଦୁଇଟି ଉତ୍ସବକୁ ଆଖପାଖ ରାଜ୍ୟର ନିମନ୍ତ୍ରିତ ରାଜା ଓ ରାଜକୁମାରଗଣ ଏହି ଉତ୍ସବରେ ଭାଗ ନେଇଥାନ୍ତି ।

ସେଥର ବୀଜବପନ ଉତ୍ସବରେ ରାଜ୍ୟର ଅବସରପ୍ରାପ୍ତ ସେନାପତି ବଜରଙ୍ଗ ସିଂହଙ୍କ କ୍ଷେତରେ ଉତ୍ସବ ଜାରି ଥିଲାବେଳେ ପଡ଼ୋଶୀ କାଶୀକୋଶଳର ରାଜକୁମାର ରତନ ସିଂହ ଆମନ୍ତ୍ରିତ ହୋଇ ଆସିଥା'ନ୍ତି । ବଜରଙ୍ଗ ସିଂହ ଅତି ବୃଦ୍ଧ ହେତୁ ତାଙ୍କର ଏକମାତ୍ର କନ୍ୟା ମାଧୁରୀ ରାଜାଙ୍କ ହାତକୁ ମୁଠା ମୁଠା କରି ରତ୍ନଥାଳିରୁ ବୀଜ ବଢ଼ାଇ ଦେଉଥାଏ ଓ ମହାରାଜା ବୁଣି ଚାଲିଥା'ନ୍ତି । ଅତ୍ୟନ୍ତ ସୁନ୍ଦରୀ ଓ ବୁଦ୍ଧିମତୀ ମାଧୁରୀ । ତାକୁ ଦେଖିବାମାତ୍ରେ କାଶୀରାଜପୁତ୍ର ରତନ ସିଂହ ମୁଗ୍ଧ ହୋଇଗଲେ । ଉତ୍ସବ ଶେଷରେ ପ୍ରଥା ଅନୁସାରେ ରାଜା ସୁବର୍ଣ୍ଣ ଥାଳିରେ ହୀରା, ନୀଳା, ମଣିମୁକ୍ତାଦି ଅଷ୍ଟରତ୍ନ ପୂର୍ଣ୍ଣ କରି ମାଧୁରୀକୁ ଉପହାରସ୍ୱରୂପ ଦେବାକୁ ଗଲାବେଳେ ମାଧୁରୀ ବିନମ୍ରତାର ସହ ତାକୁ ଗ୍ରହଣ ନ କରି କହିଲା, "ପ୍ରଭୁ ! ରାଜାଙ୍କ କର୍ଷଣ ଓ ବୀଜବପନରେ ମୋ କ୍ଷେତ୍ର ପବିତ୍ର ହୋଇଛି । ମୁଁ ମହାରାଜାଙ୍କୁ ବୀଜ ବଢ଼ାଇ ଯେଉଁ ଗୌରବ ଲାଭ କରିଛି, ସେଇ ତ ମୋ ପୁରସ୍କାର ! ଆଉ ଅଧିକ କି ଆବଶ୍ୟକ ?

ଏ କ୍ଷେତ୍ର ଏଇ ରାଜ୍ୟର । ମୁଁ ଓ ମୋର ପିତା ଏ ରାଜ୍ୟ ଅନ୍ନରେ ପାଳିତ । ତେଣୁ ଆପଣ ଏ ଅତୁଳ ଧନରତ୍ନ ଏ ରାଜ୍ୟର ଉନ୍ନତି ସକାଶେ ବ୍ୟୟ କରନ୍ତୁ । ରାଜ୍ୟବାସୀଙ୍କର ଜଳକଷ୍ଟ ଦୂର କରିବାକୁ ଏ କ୍ଷେତ୍ରରେ ଏକ ସରୋବର ଖନନ ହେଉ ଏବଂ ନିକଟସ୍ଥ ଚଙ୍ଗାଣ ପାହାଡ଼ରେ ମୋର ଆରାଧ୍ୟଦେବ ସୋମେଶ୍ୱର ଅଛନ୍ତି, ତାଙ୍କର ଏକ ମନ୍ଦିର ତୋଳାଇଦିଅନ୍ତୁ ।" ଅଗତ୍ୟା ମହାରାଜା ବାଳିକାଟିର ମହାନତା ପାଖରେ ନିରସ୍ତ ରହିଲେ । ସରୋବର ଖନନ ଓ ମନ୍ଦିର ନିର୍ମାଣ ପାଇଁ ଆଦେଶ ପ୍ରଦାନ କଲେ ।

ଅସାମାନ୍ୟା ବୁଦ୍ଧିମତୀ, ସୁନ୍ଦରୀ ମାଧୁରୀ ପ୍ରତି ଆକର୍ଷିତ ହୋଇ କାଶୀକୋଶଳର ରାଜକୁମାର ରତନ ସିଂହ ତା' ସହିତ ସମ୍ପର୍କ ରକ୍ଷାକରି ତାର ପାଣିପ୍ରାର୍ଥୀ ହେଲେ; ମାତ୍ର କୌଣସି ରାଜକୁମାରଙ୍କୁ ସେ ବିବାହ କରିବେ ନାହିଁ ବୋଲି ମାଧୁରୀ ମନାକରି ଦେବାରୁ ସେ ମନଦୁଃଖରେ ଆପଣା ରାଜ୍ୟକୁ ଚାଲିଗଲେ । ଏଣେ ବିରାଟ ସରୋବର ଖନନ ହେଲା । ସୋମେଶ୍ୱର ମନ୍ଦିର ହେଲା । ସ୍ୱପ୍ନାଦେଶ ପାଇ ମହାରାଣୀଙ୍କ ଦ୍ୱାରା ସେଇ ପାହାଡ଼ ଉପରେ ଦୁର୍ଗା ଓ ଚଉଷଠି ଯୋଗିନୀ ମନ୍ଦିର ନିର୍ମିତ ହେଲା ଏବଂ ଉକ୍ତ ସ୍ଥାନଟି 'ସୋମେଶ୍ୱର' ତୀର୍ଥ ନାମରେ ବିଖ୍ୟାତ ହେଲା ।

ସର୍ବଦା ବହୁ ରାଜ୍ୟରୁ ତୀର୍ଥଯାତ୍ରୀଙ୍କ ସହ ବହୁ

ଲୋକ ସମାଗମ ହେବାରୁ ଶାନ୍ତିରକ୍ଷା ପାଇଁ ମାଧୁରୀ ଏକ ବିରାଟ ନାରୀବାହିନୀଙ୍କୁ ନେଇ ଏକ ସେନାଦଳ ଗଠନ କରି ସେଠାରେ ରହି ପରିଚାଳନା କରିବାରେ ଲାଗିଲା । ଅଶ୍ୱାରୋହଣ ଓ ଯୁଦ୍ଧାସ୍ତ୍ର ପରିଚାଳନାରେ ନିପୁଣା ମାଧୁରୀ ତା' ଭଳି କୁମାରୀ କନ୍ୟାଗଣଙ୍କୁ ଯୁଦ୍ଧକଳା ଶିକ୍ଷା ଦେଇ ଏକ ଦୁର୍ଦ୍ଧର୍ଷ ବାହିନୀ ଗଢ଼ିଥିଲା ।

ଦିନବେଳେ ସୋମେଶ୍ୱର ପ୍ରଭୁଙ୍କର ପୂଜା ଓ ରାତିରେ ଯୋଗ୍ନୀ ସାଧନା ତାର ଅନୁଶାସନ ପାଲଟି ଯାଇଥାଏ । ପ୍ରତ୍ୟହ ଆଗନ୍ତୁକ ତୀର୍ଥଯାତ୍ରୀଙ୍କର ଭଲମନ୍ଦ ବୁଝିବା, ସାହାଯ୍ୟ ଓ ସେବା ଯୋଗାଇବା ଏହି ନାରୀସେନାର କାର୍ଯ୍ୟ ହୋଇଥାଏ । ଏକଦା ସେ ଖବର ପାଇଲେ ଯେ ମହାରାଷ୍ଟ୍ର ରାଜ୍ୟର ରାଜା ଏକ ବିରାଟ ସେନାବାହିନୀ ପଠାଇ ସୋମେଶ୍ୱର ତୀର୍ଥ ଓ କୋଶଳ ରାଜ୍ୟକୁ ଅଧିକାର ପାଇଁ ସୀମାନ୍ତରେ ପ୍ରସ୍ତୁତ ଚଳାଇଛନ୍ତି । ହଠାତ୍ ଏକ ରାତ୍ରିରେ ମାଧୁରୀ ତା'ର କୁମାରୀବାହିନୀଙ୍କୁ ନେଇ ସେମାନଙ୍କ ଉପରେ ଚଢ଼ାଉ କଲା । ଅସ୍ତ୍ରାଘାତରେ ମରହଟ୍ଟାବାହିନୀ ମୃତାହତ ହୋଇ ଯେଉଁ ଆଡ଼କୁ ଚାହିଁଲେ, ଶହ ଶହ କରାଳ ଯୋଗ୍ନୀ ମୂର୍ତ୍ତିଙ୍କୁ ଦେଖି ଭୟରେ ପଳାୟନ କଲେ ।

ରାଜା ଏକଥା ଜାଣିପାରି ମାଧୁରୀକୁ ପ୍ରଶଂସା କରି ପୁଣି ପୁରସ୍କାର ଯାଚିଲେ; କିନ୍ତୁ ମାଧୁରୀ କହିଲା, "ଜନ୍ମଭୂମିର ରକ୍ଷା ମୋର କର୍ତ୍ତବ୍ୟ । ମୁଁ ପୁରସ୍କାର ଚାହେଁ ନାହିଁ । ଯେବେ କିଛି ଚାହିଁବି, ମାଗିନେବି ।" କୋଶଳ-ରାଜାଙ୍କ ମୁହଁରେ ଏ ଅଦ୍ଭୁତ ବାଳିକା ପ୍ରତି ପ୍ରଶଂସାର ଭାଷା ନ ଥିଲା । ବୃଦ୍ଧ ପିତା ବଜରଙ୍ଗ ମାଧୁରୀର ବିବାହ ପାଇଁ ଯେତେ ବୁଝାଇଲେ ବି ସେ ମାନିଲା ନାହିଁ । ତା' ମନ ଭିତରେ ବେଳେବେଳେ କାଶୀ ରାଜକୁମାରଙ୍କ ଛବି ଫୁଟିଉଠୁଥିଲା । ତୀର୍ଥକ୍ଷେତ୍ରର ସୁରକ୍ଷାରେ ଥିବାବେଳେ ଦିନେ ଏକ କ୍ଷତାକ୍ତ ସଂଜ୍ଞାହୀନ ଯୁବକକୁ ସେବାଦଳ ତା' ପାଖକୁ ଆଣିଲେ । ସେ ଚିହ୍ନିଲା, ଏଇ ସେଇ କାଶୀରାଜକୁମାର ରତନ ସିଂହ । ତାଙ୍କୁ ସେବାଶୁଶ୍ରୂଷାରେ

**ସୋମେଶ୍ୱର ମନ୍ଦିର**



ସୁସ୍ଥ କରି ଜାଣିବାକୁ ପାଇଲା ଯେ କାଶୀ ରାଜ୍ୟରେ ବିଦ୍ରୋହ ଘଟିଛି । ବିଦ୍ରୋହୀମାନେ କାଶୀ ରାଜାଙ୍କୁ ହତ୍ୟାକରି ରତନ ସିଂହଙ୍କୁ ଆହତ କରିବାରୁ ସେ ଜଙ୍ଗଲରେ ପଳାଇ ଆସୁ ଆସୁ ସଂଜ୍ଞାହୀନ ହୋଇ ପଡ଼ିଯାଇଥିଲେ । ରାଜକୁମାର ସୁସ୍ଥ ହୋଇ ବାରମ୍ବାର ମାଧୁରୀକୁ ଚାହୁଁଥିଲେ ବି ଭୟରେ କିଛି କହୁ ନଥାନ୍ତି । ଏହାଜାଣି ମାଧୁରୀ ଦିନେ ତାଙ୍କୁ କହିଲେ, "ଏବେ ତୁମେ ରାଜପୁତ୍ର ନୁହଁ । ଜଣେ ସାଧାରଣ ଯୁବକ । ଏଣୁ ମୁଁ ତୁମକୁ ବିବାହ କରିପାରେ; କିନ୍ତୁ କିଛିଦିନ ଅପେକ୍ଷା କରିବାକୁ ହେବ । କାରଣ ମୋର ସାଧନା ଏ ପର୍ଯ୍ୟନ୍ତ ପୂର୍ଣ୍ଣ ହୋଇନାହିଁ ।"

ଅଗତ୍ୟା ରତନ ସିଂହ ମାଧୁରୀ ଆଶ୍ରୟରେ ସେଠାରେ ରହିଗଲେ । ରାଜା ସେଠାରେ ଥିବା ଖବର ପାଇ ତାଙ୍କର ଅନୁଗତ ଭଗ୍ନସେନାବାହିନୀ ଏକତ୍ର ହୋଇ ନିକଟସ୍ଥ ଘୋର ଜଙ୍ଗଲରେ ଡେରା ପକାଇ ତାଙ୍କ ସହ ଯୋଗାଯୋଗ କଲେ । କାଶୀ ରାଜ୍ୟ ପୁନରାଧିକାର ପାଇଁ ବହୁ ସୈନ୍ୟ ଓ ଅର୍ଥ ଆବଶ୍ୟକ । ତେଣୁ ଶାନ୍ତଶିଷ୍ଟ କୋଶଳ ରାଜ୍ୟର 'ବାହାବଳ' ଦୁର୍ଗ ଅଧିକାର କରି ଧନ ଓ ସେନାନୀ ଘେନି କାଶୀ ରାଜ୍ୟକୁ ଜୟ କରିବା ମସୁଧା କଲେ । କାଶୀ ରାଜକୁମାରଙ୍କୁ ଏ ବିଷୟରେ ସନ୍ଦେହ କରି ମାଧୁରୀ ପଚାରିବାରୁ ସେ କହିଲେ, "ତୁମକୁ ରାଣୀ କରିବାକୁ କୋଶଳ ରାଜା ପ୍ରସ୍ତୁତି ଚଳାଇଛି ।"

ଦିନେ ରାତିରେ କାଶୀର ଭଗ୍ନସେନାବାହିନୀ ବାହାବଳ ଦୁର୍ଗ ଉପରେ ଚଢ଼ଉ କରିବାକୁ ଗଲାବେଳେ ମାଧୁରୀ ଯୋଗ୍ନୀ ବିଭୁତି ମୁଠାଏ ଫିଙ୍ଗିଦେବାରୁ ସେମାନଙ୍କ ଚତୁର୍ଦିଗରେ ଚକ୍ରବ୍ୟୁହ ସୃଷ୍ଟି ହୋଇଗଲା । ଫଳରେ ଦୁର୍ଦ୍ଧର୍ଷ କାଶୀବାହିନୀ ସହ କାଶୀ ରାଜକୁମାର କୁମାରୀବାହିନୀ ହାତରେ ବନ୍ଦୀ ହୋଇ କୋଶଳ ରାଜାଙ୍କ ନିକଟକୁ ନିଆଗଲେ । ରାଜା ତତ୍‌କ୍ଷଣାତ୍ ସେ ସମସ୍ତଙ୍କୁ ପ୍ରାଣଦଣ୍ଡ ଦେବାକୁ ଘୋଷଣା କରି ମାଧୁରୀକୁ ପୁନରାୟ ପୁରସ୍କାର ଯାଚିଲେ । ମାଧୁରୀ ତତ୍‌କ୍ଷଣାତ୍ ବନ୍ଦୀ ରାଜପୁତ୍ରଙ୍କ ପାଖରେ ଠିଆ ହୋଇ କହିଲେ, "ମୁଁ ନ ଜାଣି ରାଷ୍ଟ୍ର ଶତ୍ରୁଙ୍କୁ ଆଶ୍ରୟ ଦେଇଥିବାରୁ ମୋତେ ମଧ୍ୟ ପ୍ରାଣଦଣ୍ଡ ଦିଆଯାଉ ।" ରାଜା ହତଚକିତ ହୋଇଗଲେ, ରାଷ୍ଟ୍ରପ୍ରେମୀ କୁମାରୀ ପାଖରେ । ପରକ୍ଷଣରେ ମନ୍ତ୍ରୀଗଣଙ୍କ ସହ ପରାମର୍ଶ କରି କାଶୀ ରାଜକୁମାରଙ୍କ ସହ ମାଧୁରୀର ବିବାହ କରାଇ ତାଙ୍କୁ ନିଜ ଜାମାତାର ସ୍ୱୀକୃତିଦେଲେ ।

ବିବାହ ଶେଷରେ ବିରାଟ କୋଶଳବାହିନୀ ଯାଇ କାଶୀରାଜ୍ୟ ଜୟ କରି ରତନ ସିଂହଙ୍କୁ ତାଙ୍କ ରାଜ୍ୟରେ ରାଜା କରାଇଲେ । ପୁରସ୍କାର ଉପରେ ପୁରସ୍କାର ପାଇ ମହାରାଣୀ ମାଧୁରୀ ଖୁବ୍ ଖୁସିହେଲେ । ରାଷ୍ଟ୍ରପ୍ରେମର ଉପହାର ତାଙ୍କ ଜୀବନକୁ ସୁରଭିତ କରିଥିଲା ।

*ବରପାଲିପଡ଼ା, ବଲାଙ୍ଗିର*

ଜନଶ୍ରୁତି - ଆମର ଢଗଢ଼ମାଳି

## 'ସତ କହିବାକୁ କିଆଁ ଡରିବି'

ଶ୍ରୀ ଅନ୍ତର୍ଯ୍ୟାମୀ ଲେଙ୍କା

ଅଭୟ ନାମରେ ପିଲାଟିଏ; କିନ୍ତୁ ସବୁଯାକ ଭୟ ତା' ଭିତରେ । ବିଶେଷ ଭଲ ପଢ଼େ ନାହିଁ । କିନ୍ତୁ ଘରେ ଗାଳି ଶୁଣିବାର ଭୟରେ କପିକରି ପରୀକ୍ଷାରେ ମଧ୍ୟମ ଧରଣର ନମ୍ବର ରଖି କାମ ଚଳାଇ ନେଉଥାଏ । ଏଣୁ ଘରେ ତା' ଉପରେ ସମସ୍ତେ ଖୁସି ଥାଆନ୍ତି । କିନ୍ତୁ ତା' ବାପା ତାକୁ ଅନେକ ସମୟରେ ପଚାରନ୍ତି, "ଆଜିକାଲି ସ୍କୁଲଠାରୁ ଆରମ୍ଭ କରି କଲେଜମାନଙ୍କରେ ବିଶେଷ ପାଠପଢ଼ା ହେଉନାହିଁ, ଶିକ୍ଷକମାନେ ଟିଉସନ ଆଡ଼କୁ ମନ ଦେଲେଣି । ତୋ' ପାଇଁ ସେପରି ବ୍ୟବସ୍ଥା କରିବା କି ?"

ଅଭୟ ମନା କରେ । ଏଥିପାଇଁ ଦୁଇଟି କାରଣ ଥିଲା । ପ୍ରଥମ ହେଲା– ତା'ର ଅନ୍ୟ ଆନନ୍ଦଦାୟକ କାର୍ଯ୍ୟ ଓ ବୁଲାବୁଲିରେ ବାଧା ଘଟିବ, ଅନ୍ୟଟି ହେଲା ଅବାଧରେ କପି କରି ପାସ୍ କରିଯାଉଥିବାରୁ ଭଲଭାବେ ପଢ଼ିବାର ଗୁରୁତ୍ୱ ଓ ସନ୍ତୋଷ ଅନୁଭବ ସେ କରିପାରୁ ନ ଥିଲା । ଧୀରେ ଧୀରେ ତାର ତଳ ଶ୍ରେଣୀସବୁ ଶେଷ ହୋଇ ଦଶମ ଶ୍ରେଣୀ ଆସିଲା । ବୋର୍ଡ ପରୀକ୍ଷା ହେବ । ବାପା ଅଭୟକୁ ପାଖକୁ ଡାକି ଭଲ ପଢ଼ାପଢ଼ି ପାଇଁ ଟିଉସନ୍ ହେବାକୁ କହିଲେ । ଏଥର ବି ଅଭୟ ସତ କହିବାକୁ ପଛାଇଲା । କପିର ସ୍ୱାଦ ଯେ ଚାଖିଛି, ସେ କାହିଁବା ଝାମେଲାକୁ ଯିବ ? ସେଥିପାଇଁ କୁହାଯାଇଛି, "ମିଛର ପଥ ପିଚ୍ଛିଳ-ସତ୍ୟର ପଥ କଣ୍ଟକମୟ ।" ତାକୁ ଭଲକଥା ଅଡୁଆ ଲାଗୁଛି । ସେ ସଫା କହିଦେଲା ଯେ ବିନା ଘରୋଇ ଶିକ୍ଷକରେ ପରୀକ୍ଷାରେ ଭଲ ନମ୍ବର ରଖି ସେ ପାସ୍ କରିପାରିବ ।

ପରୀକ୍ଷା ଆସିଲା । ଅଭୟ ପରୀକ୍ଷାରେ ଯଥାରୀତି କପି କରିବାକୁ ଆରମ୍ଭକଲା । ପରୀକ୍ଷା ନିରୀକ୍ଷକମାନେ କେହି ଜାଣି, କେହି ଭୟରେ, କେହି ଅନ୍ୟାନ୍ୟ ପ୍ରଲୋଭନ ଯୋଗୁଁ ଅଭୟକୁ କିମ୍ବା ଅନ୍ୟ କପି କରୁଥିବା ପିଲାମାନଙ୍କୁ କିଛି କହୁ ନଥାନ୍ତି । କେତେକ କପି ମଧ୍ୟ ଯୋଗାଇ ଦେଉଥାଆନ୍ତି । ସେଦିନ ଥାଏ ଇଂରାଜୀ ପରୀକ୍ଷା । ଏହାଥିଲା କପିବିଶାରଦ ଛାତ୍ରମାନଙ୍କର ଦୁର୍ଯ୍ୟୋଗ । ଅଭୟ ସହ ଯେଉଁମାନେ କପିକରି ଆସୁଥିଲେ, ସେଦିନ ବାଧା ପାଇଲେ । ଧରାପଡ଼ିଲେ, ପରୀକ୍ଷାହଲ୍‌ରୁ ବାହାର କରିଦିଆଗଲା । ଅଭୟ ଭାବି ନଥିଲା ଏହି ଗୁରୁତ୍ୱପୂର୍ଣ୍ଣ ପରୀକ୍ଷାର ଶେଷ ମୁହୂର୍ତ୍ତରେ ତା'ର ଦକ୍ଷତା ଏପରି ଅକାମି ହୋଇପଡ଼ିବ । ଏବେ ତାକୁ ଘରେ ଓ ସାହିପଡ଼ିଶାରେ ଲୋକମାନେ କ'ଣ କହିବେ ! ବାପାଙ୍କ ଆଗରେ କିପରି ମୁଣ୍ଡ ଟେକି ଚାଲିବ ? ବୋଉ ତା'ର ଏହି ହୀନ କାର୍ଯ୍ୟ ପାଇଁ ମନରେ ବହୁତ ଆଘାତ ପାଇବ ।

ଏହିପରି ନନା ଚିନ୍ତା ତା' ମନକୁ ଭାରାକ୍ରାନ୍ତ କରି ପକାଇଲା । ସେ ଆଉ ଘରକୁ ଫେରିଲା ନାହିଁ । ସେହି ସାଇର ଅନ୍ୟ ପିଲାମାନେ ଫେରିଆସିଲେ । ଘଟଣା ଅଭୟର ବାପା-ବୋଉଙ୍କ କାନରେ ପଡ଼ିଲା । ସେମାନେ ବ୍ୟସ୍ତ ହେଲେ । ଚାରିଆଡ଼ ଖୋଜାଖୋଜି କଲେ । ତାଙ୍କୁ ନ ପାଇ ଖିଆପିଆ ଛାଡ଼ି ରାତିସାରା ବସିରହିଲେ ।



ରାତି ଅଧ । କବାଟରେ ଠକ୍ ଠକ୍ ଶବ୍ଦ ଶୁଭିଲା । କବାଟ ଖୋଲିଲାବେଳକୁ ଦେଖାଗଲା କେତେଜଣ କେଉଟ ଓଦାସରସର ଦୁର୍ବଳ, ଅବସନ୍ନ ଅଭୟକୁ ଧରି ଠିଆ ହୋଇଛନ୍ତି । ସେମାନଙ୍କଠାରୁ ଜଣାପଡ଼ିଲା ଯେ ବୁଡ଼ି ମରିବାକୁ ଯାଉଥିବା ଚେତାଶୂନ୍ୟ ଅବସ୍ଥାରେ ସମୁଦ୍ରରୁ ଅଭୟକୁ ଉଦ୍ଧାର କରି, ଚେତା ଫେରିଲା ପରେ ଠିକଣା ବୁଝି ଏଠାରେ ପହଞ୍ଚିଛନ୍ତି । ଅଭୟର ବାପା ସେମାନଙ୍କୁ କୃତଜ୍ଞତା ଜଣାଇ କିଛି ପୁରସ୍କାର ଦେଇ ବିଦାୟ ଦେଲେ ।

ପରଦିନ ଅଭୟ ଟିକିଏ ସୁସ୍ଥ ହେବାପରେ ତା' ବାପା କହିଲେ, "ତୋ' ବିଷୟରେ ତୋ ସାଙ୍ଗମାନଙ୍କ ଠାରୁ ସବୁ ଶୁଣିଛି । ତୁ ମୋତେ ମିଛ କହୁଥିଲୁ । ଆଗରୁ କପି କରି ପାସ୍ କରୁଥିଲୁ । ସତ କହିଥିଲେ, ମୁଁ ଭଲ ଶିକ୍ଷକ ଦେଇ ତୋ ପଢ଼ାରେ ସାହାଯ୍ୟ କରିଥା'ନ୍ତି । ଏବେ ତୋର ଭୁଲ୍ ବୁଝିପାରୁଛୁ ବୋଲି ମୋର ଧାରଣା । ଏଣିକି ତୋ' ପାଠ ପଢ଼ାପାଇଁ ଯାହା ଉଚିତ ଭାବୁଛୁ କର, ମୁଁ ସାହାଯ୍ୟ କରିବି ।"

ଅତଏବ, ଏହି ଘଟଣାର ଉଦାହରଣରୁ ଆମେ ଦେଖିଲେ ଯେ ନିଜ ଭୁଲ୍‌କୁ ଭଲ ବୋଲି ଭାବୁଥିବା କଥାକୁ ପ୍ରକାଶ କରିବାର ସାହସ ଅଭାବରୁ ପରିଣତି କିପରି ସଙ୍କଟଜନକ ହୋଇଉଠିଲା । ପ୍ରଥମ ଭୁଲ୍‌ଟିକୁ ଘୋଡ଼ାଇବାକୁ ଯାଇ ତା' ପଛକୁ, ତା' ପଛକୁ ବାରବାର ଭୁଲ୍ କରିବାକୁ ହୋଇଥାଏ, ଫଳରେ ତାହା ପରିସ୍ଥିତିକୁ ଜଟିଳ ରୂପ ପ୍ରଦାନ କରେ । ତେବେ କପି ହେଉ କିମ୍ବା ସେହିପରି ଅନ୍ୟ ଅସାଧୁ ଉପାୟ ଅବଲମ୍ବନ କଲେ ନିଜର ତଥା ସମୂହର ଅଗ୍ରଗତିରେ ସହାୟକ ନ ହୋଇ ବାଧକ ହୋଇଥାଏ ।

ପୂଜ୍ୟ ରାମକୃଷ୍ଣ ନନ୍ଦଙ୍କ 'ଆହେ ଦୟାମୟ ବିଶ୍ୱବିହାରୀ' କବିତାର ଗୋଟିଏ ଧାଡ଼ିର ମର୍ମକୁ ବୁଝାଇବାକୁ ଯାଇ ଏ ଲେଖାଟି ଉପସ୍ଥାପନା କରିଛୁ । ପ୍ରତ୍ୟେକ ଧାଡ଼ିର ମର୍ମ ଗୁରୁତ୍ୱପୂର୍ଣ୍ଣ ଓ ଭାବପ୍ରବଣ । ଶେଷରେ ପିଲାମାନଙ୍କୁ ଉପଦେଶ ଦେଉଛି ଯେ ଏହାକୁ ମନ୍ତ୍ର ଭଳି ସର୍ବଦା ଜପକଲେ ଜୀବନଯାତ୍ରା ସୁଖମୟ ହେବ ।

*ରାଜାବଗିଚା, କଟକ*

---



ତିନୋଟି ଅକ୍ଷରେ ନାମ ତାହାର,
ମାତୃଭୂମି ଅଟେ ଇଏ ଆମର ।
ପ୍ରଥମ ତୃତୀୟ କରିଲେ ଯୋଗ,
ଖାଦ୍ୟର ପ୍ରତୀକ ନାମ ପାଇବ ।
ପ୍ରଥମ ଦ୍ୱିତୀୟ ଯୋଗ କରିବ
ଓଜନ ଅର୍ଥଟି ଆଗ ପାଇବ ।
ଦ୍ୱିତୀୟ ତୃତୀୟ ମିଶାଇ ଦେଲେ
ମଜିବା ଅର୍ଥଟି ପାଇବ ଭଲେ ।
ଏହାର ଉତ୍ତର ଯିଏ ପାଇବ
ଦେଶପ୍ରେମୀ ଛାତ୍ର ସିଏ ହୋଇବ ।

**ଶ୍ରୀ ଉତ୍କଳ କେଶରୀ ସାହୁ**(୮ମ ଶ୍ରେଣୀ), ଏସ୍.ଟି. ଜାଭିୟର୍ସ ହାଇସ୍କୁଲ, ଆନନ୍ଦପୁର , କେନ୍ଦୁଝର- ୭୫୮୦୨୧ ।

# ଡର

ଶ୍ରୀ ଶ୍ରୀନିବାସ ପାଣି

ଡରନା' ପିଲେ କୌଣସି ବେଳେ
ଡାହାଣୀ, ଭୂତ, ପ୍ରେତ
ସେମିତି ଜମା ନଥା'ନ୍ତି କେହି
ତାହା ମନର ଭ୍ରାନ୍ତ ।
ଦେଖିଲେ ଛାଇ ଡରନ୍ତି କେହି
ଆଉ କେ ଅନ୍ଧକାର
ଆସିଲେ ରାତି ଜାଗଇ ଭୀତି
ନ ହୁଅନ୍ତି ବାହାର ।
ଶୁଣିଲେ ମାତ୍ର ଟିକିଏ ଶବ୍ଦ
ଚମକି ପଡ଼େ କେହୁ
ଛାତିରେ ଛେପ କରନ୍ତି ଲେପ
ଝାଳ ବହଇ ଦେହୁ ।
ଶଙ୍କା କାହାଣୀ ଶୁଣିବା କ୍ଷଣି
ଥରି ଉଠଇ ତନ୍ତ୍ରୀ
ଦୁର୍ବଳ ମନ ଭୂତ ଭାବନା
ଦେହର ଜ୍ୱର ତାତି ।
ବାହାର ଚିତ୍ର ପ୍ରତିଫଳିତ
ହୋଇଲେ ହୃଦ ମଧ୍ୟେ
ତହିଁରୁ ବେଗେ ସଂଶୟ ଜାଗେ
ନ ରହି ମନ ସାଧେ ।
ଡରକୁଳା ଯେ ଡରେ ସହଜେ
ମରଇ ପ୍ରତିକ୍ଷଣେ
ଜୀବନ ସଞ୍ଚ ରହିବା ବଞ୍ଚି
ଥିଲେ ନିର୍ଭୀକ ପଣେ ।
ଡରିବା ଯେତେ ମାତା ପଣତେ
ମୁହଁ ଢାଙ୍କିବା ସେତେ
ସାହସିକତା ହାରିବ ସତ୍ତା
ବଡ଼ ହୋଇବା ମାତ୍ରେ ।
ଡରିବ ଯଦି ଦିବସ ରାତ୍ରି
ମନ୍ଦ କାମକୁ ଡର
ମଣିଷପଣ କରଇ କ୍ଷୁଣ୍ଣ
ଯାହାକି ମିଥ୍ୟାଚାର ।

*କନ୍ତକାଇ, କଳାପଥର, କଟକ– ୭୫୪୦୦୯*

| | | | |
|---|---|---|---|
| ପି.ଭି ନରସିଂହାରାଓ, କରିମ ନଗର, ତେଲଂଗାନା | ୬୯ | ୫ ବର୍ଷ | କର୍କଟ |
| ଏ.ବି ବାଜପାୟୀ, ଗ୍ୱାଲିଅର, ଏମ୍ ପି | ୭୧ | ୬ ବର୍ଷ | ମକର |
| ଏଚ୍ ଡି ଦେୱଗୌଡ଼ା, ହରଦାନହଲ୍ଲି, ହାସାନ୍ | ୬୩ | ୧୧ ମାସ | ବୃଷ |
| ଆଇ କେ ଗୁଜରାଲ୍, ଡେଲମ, ପଂଜାବ (ପାକିସ୍ତାଁ) | ୭୭ | ୧୧ ମାସ | ଧନୁ |
| ମନମୋହନ ସିଂ, ଗହ, ପଂଜାବ (ପାକିସ୍ତାଁ) | ୭୧ | ୧୦ ବର୍ଷ | ତୁଳା |
| ନରେନ୍ଦ୍ର ମୋଦି, ଭଦନଗର, ଗୁଜରାତ | ୬୩ | ୧.୩ ମାସ | କନ୍ୟା |

ସ୍ୱାଧୀନତା ଦିବସ ସ୍ୱତଂତ୍ର ସଂଖ୍ୟା– ଇଣ୍ଡିଆ ଟୁଡେ -- ସଂଗ୍ରହ– ଡ ଶୁଭେଂଦ୍ରମୋହନ ଶ୍ରୀଚଂଦନ ସିଂହ

# କ୍ରୋଧ ମାନବର ପରମ ଅରି

ଶ୍ରୀ ଜେନାମଣି ଲକ୍ଷ୍ମୀକାନ୍ତ



ଆଜିଠାରୁ ପ୍ରାୟ ୬୪୬ ବର୍ଷ, ଅର୍ଥାତ୍ ୧୩୬୪ ମସିହାର କଥା । ପଶ୍ଚିମ ଏସିୟାର ସମରକନ୍ଦର ସବୁଠୁଁ ପରାକ୍ରମୀ ଏବଂ ଧନଶାଳୀ ଅମିର ତୈମୁର୍‌ଲଙ୍ଗ ସମରକନ୍ଦର ବାଦଶାହା ରୂପେ ସିଂହାସନାରୂଢ଼ ହେବା ଉତ୍ତାରୁ; ଅନ୍ୟ ରାଜ୍ୟ ଜୟ, ଲୁଣ୍ଠନ ଓ ନରହତ୍ୟା, ରକ୍ତପାତ ଓ ନିର୍ମମ ଅତ୍ୟାଚାରକୁ ନିଜର ଅବ୍ୟର୍ଥ ଆୟୁଧ ରୂପେ ବରିନେଇଥିଲେ । ରାଜସିଂହାସନାରୂଢ଼ ହେଲେ କ'ଣ ହେବ; ରାଜଧର୍ମ ସମ୍ପର୍କରେ ତାଙ୍କର ଧ୍ୟାନ ଓ ଧାରଣା କଣିକାଏ ନ ଥିଲା । ସେ ଥିଲେ ସ୍ୱଭାବତ ଦୁର୍ଜନ ଓ ଦୁରାଚାରୀ । ବିନା କାରଣରେ ଖଳ ପ୍ରକୃତିର ବ୍ୟକ୍ତିଙ୍କ ଭଳି ଖୁସି ଏବଂ ରୁଷ୍ଟ ମଧ୍ୟ ହେଉଥିଲେ ।

ସରଳତା, ପବିତ୍ରତା, ଦୟାମାୟା, ବିନମ୍ରତା, ସହନଶୀଳତା, ଧର୍ମପରାୟଣତାର ସିଏ ଧାର ଧରୁ ନ ଥିଲେ । ସାପର ବିଷ ତା'ର ଦାନ୍ତରେ, ମହୁମାଛିର ବିଷ ତାର ମଥାରେ, ବିଛାର ଜହର ଲାଞ୍ଜରେ ଥିବା ଭଳି ତୈମୁରଲଙ୍ଗଙ୍କ ମନପ୍ରାଣ ଓ ଅବୟବ ବିଷମୟ ଥିଲା । ସେ ଥିଲେ ନରରକ୍ତପିପାସୁ, ଚଣ୍ଡାଳରୂପୀ ଘାତକ । ଏଭଳି ପୈଶାଚିକ ଆଚରଣରୁ ସେ ଅତ୍ୟନ୍ତ ଆନନ୍ଦ ପାଉଥିଲେ । ତାଙ୍କୁ ଜଣା ନ ଥିଲା ଯେ – "କର୍ମ କରେ ସ୍ୱର୍ଗ ନରକ ରଚନା, ଭୋଗ କର୍ମଫଳ ହେତୁ ।"

ସିଂହାସନାରୂଢ଼ ହେବାର ଦୁଇ ବର୍ଷ ପରେ ଅର୍ଥାତ୍ ୧୩୨୬ ମସହାରେ ପ୍ରବଳପରାକ୍ରମୀ ଲୁଟେରା, ନିର୍ମମ ଅତ୍ୟାଚାରୀ ରୂପେ ପ୍ରଖ୍ୟାତ ବାଦଶାହା ତୈମୁରଲଙ୍ଗଙ୍କ ଲୋଲୁପ ଦୃଷ୍ଟି ପଡ଼ିଲା ପାରସ୍ ଏବଂ ଆଫଗାନିସ୍ଥାନ ଉପରେ । କେବଳ ଧନସମ୍ପତ୍ତି, ଲୁଣ୍ଠନ ଓ ରାଜ୍ୟବିଜୟ ଏବଂ କରାୟତ୍ତ ନୁହେଁ; ନରସଂହାରରେ ଲିପ୍ତ ରହି ସେ ଏକ ପୈଶାଚିକ ସୁଖ ଏବଂ ଆତ୍ମତୃପ୍ତି ଲାଭ କରୁଥିଲେ ।

ଏକଦା ବାଗଦାଦ୍ ଆକ୍ରମଣ ସମୟରେ ଲକ୍ଷ ଲକ୍ଷ ମଣିଷଙ୍କ ଶିରଚ୍ଛେଦ, ଗୃହଦାହ ଏବଂ ସମ୍ପଦ ଲୁଣ୍ଠନରେ ସିଏ ଦୀର୍ଘ ଏକସପ୍ତାହ ଧରି ନାରକୀୟ ତାଣ୍ଡବଲୀଳା ରଚିଥିଲେ । ତାଙ୍କ ସମ୍ମୁଖରେ ନରରକ୍ତଲିପ୍ସୁ ସୈନିକମାନେ ହଜାର ହଜାର କଟାମୁଣ୍ଡର ପାହାଡ଼ ଜମା କରିଦେଲେ । ବିଜୟଗୌରବରେ ତୈମୁରଲଙ୍ଗଙ୍କୁ ଉଲ୍ଲାସରେ ଆତ୍ମବିଭୋର କରିବା ଅଭିପ୍ରାୟରେ ସେମାନେ ଏଭଳି ଜଘନ୍ୟ କର୍ମରେ ଉନ୍ମତ୍ତ ଥିଲେ । ତାଙ୍କର ମଦମତ୍ତ ହସ୍ତୀସମ ଦୁର୍ଦ୍ଧର୍ଷ, କ୍ରୁର ଏବଂ ପାଗଳ ସୈନିକମାନେ; ଶତ୍ରୁପକ୍ଷର ପ୍ରତିବାଦ ସ୍ୱର ଉତ୍ତୋଳନକାରୀ ଅସଂଖ୍ୟ, ନିରୀହ ସାଧାରଣ ମଣିଷଙ୍କୁ ହାତକଡ଼ି ପକାଇ; ତୈମୁରଙ୍କ ସାମନାରେ ହାଜର କରିଥିଲେ । ସେଇ ଅସଂଖ୍ୟ ପଣବନ୍ଦୀ ପ୍ରଜାଗଣ ଭୀତତ୍ରସ୍ତ ହୋଇ ଅବଶ୍ୟମ୍ଭାବୀ ମୃତ୍ୟୁ ଆଶଙ୍କାରେ ସଂଶୟାଚ୍ଛନ୍ନ ହୋଇପଡ଼ିଥିଲେ । ତାଙ୍କ ମୁହଁରେ ମୃତ୍ୟୁର କରାଳ ଛାଇ ସହଜରେ ବାରି ହେଉଥାଏ । ବନ୍ଦୀମାନଙ୍କ ମଧ୍ୟରେ କିଛି ଗୁଣୀ, ଜ୍ଞାନୀ, ସୁଧୀଜନ ମଧ୍ୟ ଥିଲେ । ଭୟରେ ବରଡ଼ାପତ୍ର ଭଳି ଥର ଥର ହେଉଥିବା ଆଗଧାଡ଼ିର ଦୁଇଜଣ ଏଭଳି ପଣବନ୍ଦୀଙ୍କୁ ତୈମୁରଙ୍କ ନିର୍ଦ୍ଦେଶକ୍ରମେ ତାଙ୍କ ଛାଉଣି ସାମ୍ନାକୁ ଅଣାଗଲା ।

ଜଣେ ଥିଲେ ଧର୍ମଯାଜକ, କାଜି ଏବଂ ଅନ୍ୟଜଣଙ୍କ ଥିଲେ ତୁର୍କୀସ୍ଥାନର ପ୍ରଥିତଯଶା ଲୋକପ୍ରିୟ

କବି ସୁଲେମାନ୍ ଅହମ୍ମଦ । ଏଥର ବେପରୁଆ ଓ ପ୍ରବଳପରାକ୍ରମୀ, ଅତ୍ୟାଚାରୀ ବାଦଶାହା ତୈମୁର ପ୍ରଥମେ କବି ସୁଲେମାନ ଅହମ୍ମଦଙ୍କୁ ଲକ୍ଷ୍ୟ କରି କହିଲେ, "ହଇହେ କବିପ୍ରବର ! ମୁଁ ଶୁଣିଛି କବିତୁଣ୍ଡ ମେଣ୍ଢାମୁଣ୍ଡ । କବିର କବିତା ପାଠ କାଲ ଆଗରେ ମୂଳା ଚୋବାଇବା ଭଳି । ହେଲେ କବିଏ ବଡ଼ ଚଲାଖ । ବିଦଗ୍ଧ ଓ ରସିକ ପାଠକ ହିଁ ଶ୍ଳୋକ ନିହିତ କାବ୍ୟରସ, ପିୟୂଷକୁ ଆସ୍ୱାଦନ କରିଥାଏ । କେହି କେହି କହନ୍ତି, କବିମାନେ କ୍ରାନ୍ତିଦର୍ଶୀ ଓ ତୃତୀୟ ନୟନର ଅଧିକାରୀ । ସେମାନେ କେବଳ ଭୂତ ଭବିଷ୍ୟତର ଦିଗ୍‌ଦର୍ଶନ କେବଳ ନୁହେଁ, ପରନ୍ତୁ ମଣିଷର ଦୋଷ, ଗୁଣ ପରଖି ପାରନ୍ତି । ଏଥର କବିବର ଅହମ୍ମଦୀ ତମର ଅଗ୍ନିପରୀକ୍ଷା । କୁହ ଦେଖି ବାଦଶାହଙ୍କ ସମୀପସ୍ଥ ଏହି ପଣବନ୍ଦୀ ଦୁଇଜଣଙ୍କ ସଠିକ୍ ମୂଲ୍ୟ କେତେ ? କହିପାରିଲେ ମୁଣ୍ଡରେ ପାଟ– ନ କହି ପାରିଲେ ମୁଣ୍ଡକାଟ୍ ।''

ନିର୍ଭୀକ ଏବଂ ଦୁଃସାହସୀ ତଥା ଅପ୍ରିୟ ସତ୍‌କଥନରେ ଧୁରୀଣ କବି ଅହମ୍ମଦ ଜାଣିଥିଲେ ତୁଚ୍ଛା ଭୟ କଲେ ଭୟ ଗ୍ରାସିବସେ । ତତ୍‌କ୍ଷଣାତ୍ କବି ଅହମ୍ମଦୀଙ୍କ ପ୍ରତ୍ୟୁତ୍ତର ଥିଲା, "ହଁ ବାଦଶାହା ! ପ୍ରତ୍ୟେକଙ୍କ ଆନୁମାନିକ ମୂଲ୍ୟ ଅତ୍ୟନ୍ତ ପାଞ୍ଚଶହ ଆସର୍ଫି (ସୁନାମୋହର)ରୁ କମ୍ ହେବ ନାହିଁ ପ୍ରଚଳିତ ବଜାର ଭାଉରେ ।"

ଏହା ଶୁଣି କ୍ଷଣକୋପୀ, ପ୍ରବଳପରାକ୍ରମୀ ଓ ଗର୍ବୀ ତୈମୁର ତାଚ୍ଛଲ୍ୟ କରି କହିଥିଲେ, "ସେମାନଙ୍କର ମୂଲ୍ୟ ତମ ଆକଳନ ଅନୁଯାୟୀ ୫୦୦ ଅସର୍ଫି । ତେବେ ମୋର ମୂଲ୍ୟ କେତେ ହେବ କୁହ ତ ?" ଚଟାପଟ୍ ଉତ୍ତରଦେଇ ଅହମ୍ମଦ ତୈମୁରଙ୍କୁ କହିଥିଲେ, "ହଁ ଜାହାଁପନା ! ତାହା ଖୁବ୍ ବେଶୀରେ ପଚିଶ ଅସର୍ଫି ହୋଇପାରେ । ତା'ଠାରୁ ଅଧିକ କେବେ ନୁହେଁ ।'' ଏଭଳି ହେୟଜ୍ଞାନ ଓ ତାଚ୍ଛଲ୍ୟ ଭାବରେ ତୈମୁର କ୍ରୋଧାନ୍ଧ ହୋଇପଡ଼ିଥିଲେ । ତାଙ୍କର ଭାବିବାକୁ ସମୟ ନ ଥିଲା । କ୍ରୋଧ ସର୍ବଗ୍ରାସୀ, ଭୟଙ୍କର, ଅଗ୍ନିସମ ।

ଏଣୁ ପଣବନ୍ଦୀ କବି ଅହମ୍ମଦଙ୍କର ଏହା ଅକ୍ଷମଣୀୟ ଓ ଅଶୋଭନୀୟ ଔଦ୍ଧତ୍ୟ ବିଚାରି ତୈମୁର ଗଳା ଫଟାଇ କହିଲେ, "ହଇହୋ କବି ! ଇଏ କେଉଁ ମାପଦଣ୍ଡରେ ଛାର ଦୁଇଗୋଲାମଙ୍କ ମୂଲ୍ୟ ୫୦୦ ଅସର୍ଫି ଆକଳନ କଲ ? ପୁଣି ମୋ ଭଳି ଜଣେ ବିଶ୍ୱବିଖ୍ୟାତ ପ୍ରବଳ ଧନଶାଳୀ ଏବଂ ସମ୍ମାନାସ୍ପଦ ବାଦଶାହାଙ୍କର ମୂଲ୍ୟ ମାତ୍ର ପଚିଶ ଅସର୍ଫିରେ ଧାର୍ଯ୍ୟ କଲ ! ଏହା ତ ମୋର ଶିରସ୍ତ୍ରାଣ, ଟୋପିର ମୂଲ୍ୟ ସହ ହୁଏତ ସମାନ ହୋଇପାରେ ମୋ ଜାଣିବାରେ । ତମ ମୁଣ୍ଡ କାମ କରୁନି, ତାକୁ କାଟିବା ଦରକାର ।"

ଏଥର ଅହମ୍ମଦ କହିଲେ, "ହଁ ଜାହାଁପନା ! ବାସ୍ ସେତିକି ଆପଣଙ୍କର ସବୁ କିଛି । ତାହା ହିଁ ଆପଣଙ୍କର

ପ୍ରତୀକାତ୍ମକ ପରିଚୟ । ଏଣୁ ଏହି ମାପଦଣ୍ଡରେ ମୂଲ୍ୟାୟନ କରି ମୁଁ କିଛି ଭୁଲ୍ କରିନାହିଁ ।”

ଏଥର କିଛି ସମୟ ନିରବିଯାଇ ମନେ ମନେ ତୈମୁର ବିଚାରିଲେ– ହଁ କ୍ରାନ୍ତିଦର୍ଶୀ କବି ଅହମ୍ମଦଙ୍କର ଏଭଳି ମୂଲ୍ୟାୟନ ଅପ୍ରିୟ ସତ୍ୟ ଓ କଟୁ ହେଲେ ମଧ୍ୟ ତାକୁ ଅବାନ୍ତର ଅବା ଅମୂଳକ କହି ଉଡ଼େଇଦେଇ ହେବନି । ଯଦି ସହସ୍ର ଅଶ୍ୱମେଧର ଫଳ ଓ ସତ୍ୟକଥନର ଫଳ ତରାଜୁରେ ତଉଲାଯାଏ, ତେବେ ସତ୍ୟକଥନର ଫଳର ଗୁଚ୍ଛରେ ଅଧିକ ଓଜନଦାର ହେବ; ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ଏଥିଅନ୍ତେ କ୍ରୋଧଶାନ୍ତ କରି ବାଦଶାହା ତୈମୁର ସ୍ଥିର ଚିତ୍ତରେ ଉପଲବ୍ଧି କଲେ ଯେ କ୍ରୋଧାନ୍ଧ ମଣିଷ ଭଲ, ଭେଲ ଭୁଲି ପୈଶାଚିକ ଯମର କବଳରେ କବଳିତ ହୋଇ ନିରୀହ ମଣିଷଙ୍କୁ ଶତ୍ରୁ ମଣି ସଂହାର କରିବାକୁ ପଛାଏ ନାହିଁ ।

ଏଥର ଅହମ୍ମଦଙ୍କୁ ହତ୍ୟା କରିବାର ମସୁଧାରୁ କ୍ଷାନ୍ତ ହେଲେ ତୈମୁର ଏବଂ ଚାତୁର୍ଯ୍ୟପୂର୍ଣ୍ଣ ସିଦ୍ଧାନ୍ତରେ ସ୍ୱାଭିମାନୀ କବି ଅହମ୍ମଦଙ୍କୁ ଜଣେ ପ୍ରଳାପକାରୀ, ଉଦ୍ଭଟ, ପାଗଳ ଆଖ୍ୟା ଦେଇ ପ୍ରାଣଦଣ୍ଡରୁ ମୁକ୍ତ କରିଦେବା ପାଇଁ ନିଜର ସୈନିକମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ସତରେ– “ବୁଦ୍ଧି, ବିବେକ, ଜ୍ଞାନ ବଳେ / ମରଣ ହୁଏ ଜିଣି ହେଲେ ।”

*କବିଭାରତୀ, ୧୯୦ ସୋନାଲିକା ଏନ୍‌କ୍ଲେଭ୍, ଲୁଇସ୍‌ରୋଡ୍, ଭୁବନେଶ୍ୱର- ୧୪*

## ଆସେ ଋତୁରାଜ

ଶ୍ରୀ ଉପେନ୍ଦ୍ର ନାଥ ପାତ୍ର

ବର୍ଷା କମିଥିଲା ଶୀତ ନରମିଲା
ଆସେ ଅବା ଋତୁରାଜ ବସନ୍ତ
ମାଘ ଆରମ୍ଭରୁ ପରିବେଶ ଚାରୁ
ଉଲ୍ଲସିତ ଆମେ କରୁ ସ୍ୱାଗତ । ୦ ।
ପ୍ରକୃତି ହସୁଛି ଅଙ୍ଗ ସଜେଇଛି
ନାନା ଜାତି ଫୁଲ ଶୋଭା ମଣ୍ଡନ
ଚନ୍ଦନ ଚନ୍ଦନ ବାସଇ ଫଗୁଣ
ମନେ ଭରିଦିଏ ସୁଖ ସପନ
ଏ ମଧୁ ଲଗନେ ସର୍ବେ ଉଷତ । ୧ ।
ଶିମିଳି ପଳାଶ ସୁରମ୍ୟ ପ୍ରକାଶ
ରାଧା–କୃଷ୍ଣଚୂଡ଼ା ରଚଇ ରାସ
ଭୂମିରୁ ଭୂମାର ମହିମା ଅପାର
ରଙ୍ଗଭରା ଜଳସ୍ଥଳ ଆକାଶ
ପ୍ରକୃତି ରାଣୀର ରୂପ ମନୋହର
ତନୁ ମନ ହୁଏ ରସରଞ୍ଜିତ । ୨ ।
ମଳୟ ପବନ କରେ ଆଗମନ
ମାନସପଟରେ କେତେ ଯେ ସ୍ମୃତି
ଦକ୍ଷିଣ ଦିଗରୁ ମଳୟ ଗିରିରୁ
ଭାସିଆସେ ବାସ ଭୁଲାଏ ମତି
ଏ ଦିବ୍ୟ ବେଳାରେ ପବିତ୍ର ଦୋଳରେ
ରାଧାକୃଷ୍ଣ ହେବେ ରାସେ ମିଳିତ । ୩ ।

*୬୩୬, ମହାନଦୀ ବିହାର, କଟକ*



# ଭ୍ରାନ୍ତି ଦେଖାନ୍ତୁ

ଷ୍ଟେସନ୍‌ରେ ରେଳଗାଡ଼ିଟି ହଠାତ୍ ଅଟକିଗଲା । ସମସ୍ତେ ବାହାରକୁ ଦୌଡ଼ିଲେ । ଯୁବକଟିଏ ଆସି, "ଲାଇନ୍‌ରେ ଗାଈଟିଏ କଟିଯାଇଛି, ସଫା କଲାପରେ ପୁଣି ଗାଡ଼ି ଚାଲିବ ।" କହି ଚାଲିଗଲା । ଆଧୁନିକ ଯୁବକଟିଏ । ମୁଣ୍ଡରେ ଟୋପି । ଓଠ ପାଖରେ ତ୍ରିଭୁଜ ଦାଢ଼ି । (ଅମିର୍ ଖାଁ ପରି) । ହାତରେ ମୋବାଇଲ୍ । ତା'କଥା ଶୁଣି ବାଧ୍ୟ ହୋଇ ଚୁପ୍‌ଚାପ୍ ଅପେକ୍ଷା କରିବା ଛଡ଼ା ବାଟ ନାହିଁ ଭାବିଲି ।

କିଛି ସମୟ ପରେ ସେ ଆସି ପୁଣି କହିଲା, "ନାଇଁ ମାଉସୀ, ମଣିଷଟିଏ କଟିଯାଇଛି, ଅପେକ୍ଷା କରିବାକୁ ପଡ଼ିବ । ପୁଲିସ୍ ଆସିବ । ଡେରି ହେବ । ଆପଣ ଖିଆପିଆ କରିଛନ୍ତି ତ? ଏକୁଟିଆ ଯାଉଛନ୍ତି । ଆସନ୍ତୁ ସେପଟ ଡବାରେ ମୋ ବାପାମା' ବସିଛନ୍ତି, ସେଇଠି ବସିଲେ ଆପଣଙ୍କୁ ଭଲଲାଗିବ ।" ତା'ପଛେ ପଛେ ଗଲି ସେପଟ ଡବାକୁ । ଭାରି ଭଲଲାଗୁଥାଏ ତା'ର କଥାବାର୍ତ୍ତା, ଚାଲିଚଳଣ । ପ୍ରଥମରୁ କିନ୍ତୁ ତାର ପୋଷାକପିନ୍ଧା, ମୋବାଇଲ୍‌ଧରା ମତେ ଅଡୁଆ ଲାଗୁଥିଲା । ତାର ସଂସ୍ପର୍ଶରେ ଆସିଲା ପରେ ମତେ କିନ୍ତୁ ଠିକ୍ ଲାଗିଲା । ଦେଖିଲି ତାର ବାପା, ମା ଓ ସାନଭଉଣୀ ବସିଛନ୍ତି । ମତେ ଦେଖି ତିନିଜଣଙ୍କର ଭୃକୁଞ୍ଚିତ ହୋଇଗଲା । ଝିଅଟି ଉଠି ଆରପଟକୁ ଚାଲିଗଲା । ବୋଧହୁଏ ବିରକ୍ତିର ସହ ।

ଯୁବକଟି ହସି ସେମାନଙ୍କୁ କହିଲା– ଏ ମାଉସୀ ସେପଟେ ଏକୁଟିଆ ବସିଥିଲେ ତ ଡାକିଆଣିଲି । ତମମାନଙ୍କର ସହ ଗପିଲେ ତାଙ୍କୁ ଭଲଲାଗିବ । ମୁଁ ଯାଏ ଖିଆପିଆ କଥା ବୁଝେ ।" କହି ଚାଲିଗଲା । ସବୁ ଯାତ୍ରୀଙ୍କ ଖବର ବୁଝୁଥାଏ । ସମସ୍ତଙ୍କ ସାଙ୍ଗେ ଗପ କରୁଥାଏ । ମତେ କିନ୍ତୁ ପିଲାଟିର ହାବଭାବ ବେଶ୍ ଭଲ ଲାଗୁଥାଏ । ମୁଁ ତାର ମା'ଙ୍କୁ ପଚାରିଲି, "ଆଜ୍ଞା, ଏ କ'ଣ ଆପଣଙ୍କର ପୁଅ ? କ'ଣ କରୁଛି ସେ ?"

"ବାପା, ମା'ଙ୍କର ଜୀବନକୁ ସେ ତ ମାଟି କରିଦେଇଛି । ଇଏ ଦୁଇବର୍ଷ ହେଲା ଅବସର ନେଲେଣି । ପଇସା ନା ପତ୍ର କିଛି ଦଉନି ଆମକୁ । କିଛି କରୁନି । କ'ଣ ନା ସ୍କୁଲ କରୁଛି । ଛେନା, ଗୁଡ଼, ଲେମ୍ବୁ, ଲୁଣ କରୁଛି । ବାପଛେଉଣ୍ଡ ପିଲାଗୁଡ଼ିକୁ ଧରି ନାଟ ଲଗେଇଛି । ତାଙ୍କ ପିଛା ଅଯଥା ଟଙ୍କା ଖର୍ଚ୍ଚ କରି ଲାଭ କ'ଣ ? ସେୟା କରୁଛି କି ଆଉ କ'ଣ କରୁଛି, ଆମେ ବି ଜାଣିପାରୁନୁ । କେବେ ତ ଆମକୁ ଦେଖେଇନି ତାର ସ୍କୁଲ କଉଠି ? ସେ କ'ଣ କରେ ।" ତାର ମା' ଏତକ ଗରଗର ହୋଇ କହିଲେ ।

ଏହି ସମୟରେ ସେ ହସି ହସି ପଶିଆସିଲା ହାତରେ ଓମ୍‌ଫେଡ୍ ଥଣ୍ଡା ଦୁଧବୋତଲ ୪/୫ଟା ଧରି । ଆମକୁ ସବୁ ପିଇବାକୁ ଦେଇ ମୋ ପାଖରେ ବସି ପଡ଼ିଲା । ମତେ କହିଲା, "ମାଉସୀ, ଆହୁରି ଘଣ୍ଟାଏ ଲାଗିବ ଟ୍ରେନ୍ ଛାଡ଼ିବାକୁ । ପୁଲିସ୍ ଆସିଲାଣି । ମୋରି ଭଳି ଯୁବକଟିଏ ଟ୍ରେନ୍ ତଳେ ଆତ୍ମହତ୍ୟା କରିଛି । ଆତ୍ମହତ୍ୟା କେମିତି କରନ୍ତି କେଜାଣି ? ମତେ ଭାବିଲେ ଡର ମାଡ଼େ । ନିଜର ଜୀବନକୁ ସାମ୍ନା କରିବାର ସତ୍‌ସାହସ ଯାହାର ନାହିଁ, ସେମାନେ ହିଁ ଆତ୍ମହତ୍ୟା କରନ୍ତି ।"

ମୁଁ ହସିଲି । ଅନେକ ସମୟ ତା' ସହିତ ଗପିଲି । ଦେଖିଲି ପିଲାଟି ଖୁବ୍ ବୁଦ୍ଧିମାନ୍, ଖୁବ୍ ଦୟାଳୁ ଓ ସାହସୀ । ଜୀବନରେ ଅନେକ କାର୍ଯ୍ୟ କରିବାର ମସୁଧା ରହିଛି । ଯାହା ବି କରୁଛି, ସବୁ ମୋତେ ବୁଝେଇଲା । ଖୁବ୍ ସୁନ୍ଦର ଶାନ୍ତିପୂର୍ଣ୍ଣ ଜୀବନ ବାଛିନେଇଛି ସେ । ମାନସିକ ଅନଗ୍ରସର, ଅନ୍ଧ, ମୂକବଧିର ପିଲାମାନଙ୍କ ପାଇଁ ସ୍କୁଲଟିଏ କରିଛି । ସରକାର ମଧ୍ୟ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି । ବହୁତ ଖୁସି ଲାଗିଲା । ସେଇଦିନ

ଅନୁଭବ କଲି ଯେ ପୋଷାକ ଦେଖି ମଣିଷ ଚିହ୍ନିବା ମୋର ଭୁଲ୍ ଧାରଣା । ସେ ଚାଲିଗଲା ପରେ ତାଙ୍କର ବାପାଙ୍କୁ କହିଲି, "ଆପଣଙ୍କ ପୁଅ ପ୍ରତି ଧାରଣା ଆପଣ ବଦଳାନ୍ତୁ । ପ୍ରଥମେ ତାକୁ ବିଶ୍ୱାସ କରନ୍ତୁ, ତା'ପରେ ଅବିଶ୍ୱାସ କରିବେ । ପ୍ରଥମରୁ ଅବିଶ୍ୱାସ କରି ନିଜ ଜୀବନକୁ ଦୁର୍ବିସହ କରନ୍ତୁ ନାହିଁ । ଆଗ ବିଶ୍ୱାସର ମୂଳଦୁଆ ପକେଇଲେ ହିଁ ଆପଣ ଜାଣିପାରିବେ ନବନିର୍ମିତ ଘରଟିର ଭବିଷ୍ୟତ ଅନିଶ୍ଚିତ କି ନିଶ୍ଚିତ । ଯୁବକଟିର କାର୍ଯ୍ୟକଳାପ ଭିତରେ ନ ପଶି ଆପଣ ଅବିଶ୍ୱାସ କେମିତି କରିବେ ?

ଏହିଭଳି ଅନେକ ଯୁବକ ଅଛନ୍ତି, ଯେଉଁମାନେ ପିତାମାତା ଓ ଗୁରୁଜନମାନଙ୍କର ପ୍ରଥମ ଅବିଶ୍ୱାସରୂପକ ଭଉଁରୀ ଭିତରେ ପଡ଼ି ଦିଗହରା ହୋଇଯାଉଛନ୍ତି– "ତୋ ଦ୍ୱାରା କିଛି ହେବନି, ତୁ ଜୀବନରେ କିଛି କରିପାରିବୁନି । ଏ କାମଟା ଆରମ୍ଭ କରିଛୁ, ତାହା ଠିକ୍ ନୁହେଁ । ଆମେ ବୁଢ଼ାବୁଢୀ ହେଲୁଣି । ତୋ ଉପରେ ଭରସା କରି ଲାଭ ନାହିଁ ।" ଏହିଭଳି କଟୂକ୍ତି ହିଁ ଆଜିକାଲିର ଯୁବକମାନଙ୍କୁ ଦିଗଭ୍ରଷ୍ଟ କରିଥାଏ । ଏମିତି କହିବା ଦ୍ୱାରା ସେମାନଙ୍କ ଅନ୍ତରରେ ନୂଆ କରି ଗଢ଼ି ଉଠିବଥିବା ଆଶାର ସୌଧ ତୁଟିଯାଏ । ନିଜପ୍ରତି ନ୍ୟୁନତାବୋଧ (Inferiority Complex) ଜାଗ୍ରତ ହୁଏ ।

ଆମର ବିଶ୍ୱାସ ହିଁ ସେମାନଙ୍କୁ ବାଟ କଢ଼ାଇନେବ ଜୀବନରେ ସଫଳ ହେବା ପାଇଁ । ଯାହା ଉପରେ କି ଯୁବକମାନଙ୍କର ଆତ୍ମବଳ ଦୃଢ ଭାବେ ଠିଆ ହୋଇ- ପାରିବ, ଆଉ ଏ ଦେଶ ତା'ରି ଉପରେ ହିଁ ଗଢ଼ି- ଉଠିପାରିବ । (ପୁରୁଣା ପୃଷ୍ଠାରୁ)

**--ଅନସୂୟା ନନ୍ଦ**

## ନୂତନ ବୃନ୍ଦାବନ ଧାମ

ଧାର୍ମିକ ଅନୁଷ୍ଠାନ ଇସ୍କନ୍ ଆନୁକୂଲ୍ୟରେ ବୃନ୍ଦାବନ - ମଥୁରା ଠାରେ 'ବୃନ୍ଦାବନ ଚନ୍ଦ୍ରୋଦୟ ମନ୍ଦିର'ର ନିର୍ମାଣ କାର୍ଯ୍ୟ ୨୦୧୪ ମସିହାର ଶେଷଭାଗଠାରୁ ଆରମ୍ଭ କରାଯାଇଛି । ଏହାର ନିର୍ମାଣ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ମନ୍ଦିର ଓ ବ୍ରଜଧାମର ଅନନ୍ତ ସ୍ଥାପନା ପୂଜା ସମୟରେ ଆମ ଦେଶର ମହାମହିମ ରଷ୍ଟ୍ରପତି ମାନ୍ୟବର ପ୍ରଣବ ମୁଖାର୍ଜି ଯୋଗଦେଇ ପ୍ରକଳ୍ପର ଶୁଭାରମ୍ଭ କରିଥିଲେ । ବର୍ତ୍ତମାନ ସୁଦ୍ଧା ଏହି ମନ୍ଦିର ପୃଥିବୀର ସବୁଠାରୁ ଉଚ୍ଚତମ ମନ୍ଦିର (୭୦ ମହାଲା ବିଶିଷ୍ଟ ୭୦୦ ଫୁଟ ) ଭାବେ ପରିଗଣିତ ହେବ । ପରିକଳ୍ପନା ଓ ନକ୍ସା ଅନୁଯାୟୀ ମନ୍ଦିର ପାଇଁ ୫ଏକର ଓ ଚତୁଃପାର୍ଶ୍ୱର ବ୍ରଜଧାମ ପାଇଁ ୬୨ ଏକର ଜାଗା ବ୍ୟବହୃତ ହେବ । ଆମ ପୁରାଣବର୍ଣ୍ଣିତ ବୃନ୍ଦାବନ ଧାମର ଏକ ପ୍ରତିଛବି ଏଠାରେ ସୃଷ୍ଟି କରାହେବା ପାଇଁ ସମସ୍ତ ଯୋଜନା କରାଯାଇଅଛି ।

ବ୍ରଜଧାମର ଦ୍ୱାଦଶ କାନନ ମଧ୍ୟରେ ସ୍ୱଚ୍ଛ ଝରଣାସମୂହ, ବର୍ଷର ସବୁ ସମୟରେ ଫଳ ଓ ମନୋମୁଗ୍ଧକାରୀ ଫୁଲ ଫୁଟୁଥିବା ଗଛସବୁ ଲଗାହେବ । ଏହା ମଧ୍ୟରେ ବିଭିନ୍ନ ପ୍ରକାର ପକ୍ଷୀମାନଙ୍କର କାକଳୀ ଶୁଣିବାକୁ ମିଳିବ ଓ ବର୍ଷତମାମ ଏହିଠାରେ ଉତ୍ସବ ଲାଗି ରହିବ । ଦର୍ଶନାର୍ଥୀମାନଙ୍କର ଯିବା ଆସିବା ପାଇଁ ଏଠାରେ ହେଲିପ୍ୟାଡ୍ ମଧ୍ୟ ରହିବାର ବ୍ୟବସ୍ଥା ରହିଛି । ମୋଟାମୋଟି ଭାବେ କହିବାକୁ ଗଲେ– ଏଠାରେ ଏକ ବୃନ୍ଦାବନ ଧାମର ପରିକଳ୍ପନା କାର୍ଯ୍ୟରେ ସମସ୍ତ ଆନୁଷଙ୍ଗିକ କାର୍ଯ୍ୟ କରାଯିବ । ଏହି ପ୍ରକଳ୍ପର ଅଟକଳ ୭୦୦କୋଟି ଟଙ୍କା କରାଯାଇଛି ଏବଂ ଏହାର ସମସ୍ତ ପରିକଳ୍ପନା ନକ୍ସା ଓ ନିର୍ମାଣ ପାଇଁ ଦେଶ ବିଦେଶର ବିଭିନ୍ନ ସଂସ୍ଥାକୁ ଭିନ୍ନ ଭିନ୍ନ କାମ ପାଇଁ ନ୍ୟସ୍ତ କରାଯାଇଛି ।

ସଂଗ୍ରହ- **ସୁଭଦ୍ରା ବେହେରା**

ଶ୍ରୀ କାଞ୍ଚି ନାରାୟଣ ମହାନ୍ତି

## ଦ୍ୱିତୀୟ ବିଶ୍ୱଯୁଦ୍ଧ କଥାବସ୍ତୁ ଉପରେ ଆଧାରିତ ଛାୟାଛବି 'ରେଙ୍ଗୁନ୍'



ନିର୍ଦ୍ଦେଶକ ବିଶାଲ ଭରଦ୍ୱାଜ୍‌ଙ୍କ ନିର୍ଦ୍ଦେଶିତ ବଲିଉଡ୍ ଛବି 'କମିନେ' ଓ 'ହାଇଦର୍' ଛବିରେ ସାହିଦ୍ କପୁର୍ ଅଭିନୟ କରିଥିଲେ । ଛବିଗୁଡ଼ିକ ଭଲ ବ୍ୟବସାୟ କରିବା ସହିତ ଅଭିନୟ ଦୃଷ୍ଟିରୁ ବେଶ୍ ଆଲୋଚିତ ହୋଇଥିଲା । ଏହି ଛବି ପରେ ପ୍ରସିଦ୍ଧ ନିର୍ଦ୍ଦେଶକ ବିଶାଲ୍ ଭରଦ୍ୱାଜ ସାହିଦ୍ କପୁର୍‌ଙ୍କୁ ମୁଖ୍ୟ ଭୂମିକାରେ ପୁଣି ଆଣିଛନ୍ତି ତାଙ୍କର ନୂଆ ଛବି 'ରେଙ୍ଗୁନ୍'ରେ ।

ରେଙ୍ଗୁନ୍ ଏବେ ପ୍ରସ୍ତୁତି ପଥେ । ସୁଟିଂ ଚାଲିଛି ଅରୁଣାଚଳ ପ୍ରଦେଶର ଜଙ୍ଗଲ ଅଞ୍ଚଳରେ । ସେଠାରେ ନେଟ୍‌ୱାର୍କିଂର ସୁବିଧା ନାହିଁ; କିନ୍ତୁ ସାହିଦ୍‌ଙ୍କର ଏତେସଂଖ୍ୟକ ପ୍ରଶଂସକ ଯେ ଦିନରାତି ତାଙ୍କ ପାଖକୁ ଅନେକ ପ୍ରଶଂସାର ବାର୍ତ୍ତା ଆସୁଛି ।

ନେଟ୍‌ୱାର୍କିଂ ଅଭାବରୁ ସେ ତାଙ୍କ ସବୁ ପ୍ରଶଂସକଙ୍କର ଆବେଗକୁ ସମ୍ମାନ ଜଣାଇ ସୁଟିଂ ସେଟ୍‌ରୁ ଅତି କଷ୍ଟରେ ନେଟ୍ ମାଧ୍ୟମରେ ଟ୍ୱିଟର୍‌ରେ ଧନ୍ୟବାଦ ଜଣାଇବାକୁ ଭୁଲିନାହାନ୍ତି । ସାହିଦ୍ କପୁର୍ ତାଙ୍କର ପ୍ରଶଂସକମାନଙ୍କୁ ସବୁବେଳେ ଗୁରୁତ୍ୱ ଦେଇଥାନ୍ତି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟର ଘଟଣାକୁ ନେଇ ଏହି ଛବି ନିର୍ମାଣ କରାଯାଇଛି । ଏହି ଛବିରେ ସାହିଦ୍‌ଙ୍କୁ ମିଳିଥିବା ଭୂମିକା ସବୁ ଦୃଷ୍ଟିରୁ ଭିନ୍ନ ଏବଂ ସ୍ୱତନ୍ତ୍ର ବୋଲି ସାହିଦ୍ କହିଥାନ୍ତି । ସେ ଜଣେ ସୈନିକ ଭାବରେ ଏହି ଛବିରେ ନିଜର ଭୂମିକା ପ୍ରଦର୍ଶନ କରିଛନ୍ତି । ଭିନ୍ନ ଭିନ୍ନ ସମୟରେ ନିଜକୁ ପରିବେଷଣ କରିବାର ଯେଉଁ କଳାତ୍ମକ ପ୍ରତିଭା, ତାହାକୁ ସେ ଏହି ଛବିରେ ଦର୍ଶାଇ ବହୁ ଶ୍ରମ ସହିତ ନିଜକୁ ହଜାଇଦେଇଛନ୍ତି । ଦର୍ଶକମାନେ ମଧ୍ୟ ଛବିଘରେ ବସି ତାହା ଅନୁଭବ କରିପାରିବେ ।

ଏହି ଛବିରେ ବହୁ ଐତିହାସିକ କ୍ଷେତ୍ର ଏବଂ ତତ୍କାଳୀନ ଅବସ୍ଥାର ଛାୟାଙ୍କନ କରାଯାଇଛି । ସାହିଦ୍ କପୁର୍‌ଙ୍କ ସହ ଆଗଧାଡ଼ିର ଅନ୍ୟ କଳାକାର– ସୈଫ୍ ଅଲ୍ଲୀ ଖାନ୍ ଓ କଙ୍ଗନା ରଣାଓ୍ୱତ୍ ମଧ୍ୟ ପ୍ରମୁଖ ଭୂମିକାରେ ଆସିଛନ୍ତି । ବିଶାଲ୍ ଭରଦ୍ୱାଜ୍‌ଙ୍କ ନିର୍ମିତ ଛବି ମଧ୍ୟରେ ଏହି ଛବି 'ରେଙ୍ଗୁନ୍' ସାହିଦ୍‌ଙ୍କ ପାଇଁ ୨୦୧୬ ପରେ ତୃତୀୟ ଛବି ଭାବେ ମୁକ୍ତିଲାଭ କରିବ ଏବଂ ରେଙ୍ଗୁନ୍ ସେହି ବର୍ଷ ସେପ୍ଟେମ୍ବର ମାସରେ ଛବିଘରକୁ ପ୍ରଦର୍ଶନ ପାଇଁ ଆସିବ । ଦର୍ଶକ ତଥା ଛାତ୍ରମାନଙ୍କ ପାଇଁ ଏହି ଛବିରେ ବହୁ ଐତିହାସିକ ତଥ୍ୟ ସୁନ୍ଦର ଟେକ୍‌ନିକ୍‌ରେ ସଂଯୋଜିତ ହୋଇପାରିଛି । ତାହାକୁ ଦର୍ଶକମାନେ ଭରପୂର ଉପଭୋଗ କରିପାରିବେ ।

## ନୂଆବୋଉରୁ ଶେଷଶ୍ରାବଣ



ଓଡ଼ିଆ ଚଳଚ୍ଚିତ୍ର ଜଗତର ଇତିହାସ ପୃଷ୍ଠା ଓଲଟାଇଲେ ଅନେକ କଳାକାରଙ୍କର ଛବି ଦୃଷ୍ଟିପଥାରୂଢ଼ ହୁଏ । ଅକ୍ଷୟ ମହାନ୍ତି, ବାବି, ଶ୍ୟାମଳେନ୍ଦୁ, ଶରତ ପୂଜାରୀ,

ପ୍ରଶାନ୍ତ ନନ୍ଦ, ମିନତି ମିଶ୍ର, ଝରଣା ଦାସ, ଗୀତା ଦତ୍ତ, ଗ୍ଲୋରିଆ ରାଉତ, ମଣିମାଳା, ନିତାଇ ପାଲିତ୍, ଭାନୁମତୀ ଇତ୍ୟାଦ ଇତ୍ୟାଦି ।

ଦର୍ଶକ-ହୃଦୟଗ୍ରାହୀ କାହାଣୀ ସହିତ ଅଭିନୟର ଗଭୀରତା, ଏମାନଙ୍କର ଅଭିନୟ ଚାତୁରୀ, ମାର୍ଜିତ ଅଭିନୟ– ଏ ପର୍ଯ୍ୟନ୍ତ ଆମମାନଙ୍କର ହୃଦୟରେ ସାଇତା ହୋଇ ରହିଛି ।

ପ୍ରଶାନ୍ତ ନନ୍ଦଙ୍କର ନାମ ନ ନେଲେ ଚଳଚ୍ଚିତ୍ର ଇତିହାସର କାହାଣୀର ମହତ୍ତ୍ୱ ରହେନାହିଁ । ଅଭିନୟରୁ ରାଜନୀତି ରାସ୍ତା ପର୍ଯ୍ୟନ୍ତ ତାଙ୍କର ସ୍ୱଚ୍ଛନ୍ଦ ଗତିପଥ ସେ ବେଶ୍ ଦୃଢ଼ କରିପାରିଛନ୍ତି ।

ଜନ୍ମ ନେଲେ ୧୯୪୭ ମେ' ୨ ତାରିଖରେ । ଓକିଲାତି ପାଠ ପଢ଼ିଥିଲେ ମଧ୍ୟ ଅଭିନୟ ଜଗତ ତାଙ୍କୁ ଆକର୍ଷିତ କଲା ତାଙ୍କ ଅନ୍ତର୍ନିହିତ ପ୍ରତିଭାକୁ ଲୋକଲୋଚନକୁ ଆଣିବା ଉଦ୍ଦେଶ୍ୟରେ । ୧୯୬୨ରେ ପ୍ରଥମ ଚଳଚ୍ଚିତ୍ର ନୂଆବୋଉ ତାଙ୍କର ନିଚ୍ଛକ ଅଭିନୟର ପାରଦର୍ଶିତାରେ ପ୍ରତିଷ୍ଠା ଲାଭ କଲା ଏବଂ ସେ ପାଇଲେ ପ୍ରଥମ ଜାତୀୟ ପୁରସ୍କାର । ମାଟିର ମଣିଷ, ଶେଷ ଶ୍ରାବଣ, ହିନ୍ଦୀ ଚଳଚ୍ଚିତ୍ର ନୟା, ଗୌରୀ, ଅଦିନ ମେଘ, ସମୟ ଆଦିରେ ଅଭିନୟ ପରେ ସେ ମୁହାଁଇଲେ ନିର୍ଦ୍ଦେଶନା ଜଗତକୁ ।



ନୂଆବୋଉ ଚଳଚ୍ଚିତ୍ରରେ ଝରଣା ଦାସ ଓ ପ୍ରଶାନ୍ତ ନନ୍ଦ



ମାଟିର ମଣିଷ ଚଳଚ୍ଚିତ୍ରର ଏକ ଦୃଶ୍ୟରେ ଭାନୁମତୀ ଓ ଅନ୍ୟମାନେ

ସର୍ବ ଭୂତେଷୁ, ମା, ଲାଲ୍‌ପାନ ବିବି, ପକା କମ୍ବଳ ପୋତ୍ ଛତା ଆଦି ଅନେକ ଚଳଚ୍ଚିତ୍ରର ନିର୍ଦ୍ଦେଶନା ତାଙ୍କୁ କଳାଜଗତରେ ସୁନାମ ଆଣିଦେଲା । ଘରସଂସାର ଚଳଚ୍ଚିତ୍ରରେ ମଧ୍ୟ ସେ ସଂଗୀତ ନିର୍ଦ୍ଦେଶନା ଦେଇଥିଲେ । ତାଙ୍କର ନିର୍ଦ୍ଦେଶିତ ହିନ୍ଦୀ ଚଳଚ୍ଚିତ୍ର 'ପହେଲି' ମଧ୍ୟ ନିର୍ଦ୍ଦେଶକମାନଙ୍କ ଦ୍ୱାରା ବେଶ୍ ଆଦୃତ ହୋଇଥିଲା ।

'ଜୀଅନ୍ତା ଭୂତ' ପାଇଁ ସେ ପାଇଲେ ଜାତୀୟ ଚଳଚ୍ଚିତ୍ର ପୁରସ୍କାର ଏବଂ ଏଫ୍‌ଆଇଟିଏଫ୍ ବାଇସ୍କୋପ୍ ପୁରସ୍କାର ।

ରାଜନୀତି ଜଗତରେ ପ୍ରବେଶ କରିବା ପାଇଁ ମନ ବଳେଇ ସେ ଯୋଗଦେଲେ ଭାରତୀୟ ଜନତା ଦଳରେ । ଶେଷରେ ୨୦୦୭ରେ ନ୍ୟାସ୍‌ନାଲ୍ କଂଗେସ ପାର୍ଟି ଏବଂ ବିଜୁ ଜନତା ଦଳର ସଦସ୍ୟ ଭାବେ ଅବସ୍ଥାପିତ ହେଲେ ।

ଅଭିନେତା, ପ୍ରଚ୍ଛଦ ଗାୟକ, ନିର୍ଦ୍ଦେଶକ, ଲେଖକ ଓ ଶେଷରେ ରାଜନୀତିଜ୍ଞ ପଦରେ ଅଭିଷିକ୍ତ ହୋଇ ତାଙ୍କର କଳାକାର ଜୀବନରୁ ସେ ଅବସର ନେଲେ । ଯାହାଙ୍କର ଜୀବନ ଗତିଶୀଳ ଓ ପ୍ରତିଭା ଦିଗନ୍ତବିସ୍ତାରୀ, ସେ କେବେହେଲେ ସ୍ଥିର ରହିପାରେନା । ୨୦୧୩ରେ ସେ ଯୋଗଦେଲେ ଷ୍ଟାନ୍‌ଫୋର୍ଡ ବିଶ୍ୱବିଦ୍ୟାଳୟ ଦ୍ୱାରା




ଏଚ୍.ଆ.ଭି. ସଂକ୍ରମଣ ବିଷୟରେ ବିଶ୍ୱବ୍ୟାପି ସଚେତନତା ସୃଷ୍ଟି କରିବାରେ ଆନ୍ତର୍ଜାତୀୟ ସଂସ୍ଥା 'ଟିଚ୍ ଏଡସ୍' (Teach Aids) ରେ ସକ୍ରିୟ ଅଂଶଗ୍ରହଣ କରିଆସୁଛନ୍ତି ।

ଏହି ପ୍ରଥିତଯଶା କିମ୍ବଦନ୍ତୀ କଳାକାର ଦୀର୍ଘାୟୁ ହୁଅନ୍ତୁ– ଏତିକି ଈଶ୍ୱରଙ୍କୁ ପ୍ରାର୍ଥନା ।

*ଆଶ୍ରମ, ଶ୍ରୀବିହାର କଲୋନୀ, କଟକ- ୭୫୩୦୦୮*



## ପୁସ୍ତକ ପରିଚୟ

**ଟିଂ କୁଡୁକୁଡୁ ଟିକି ଚଢ଼େଇ**-- ଲେଖକ- **ଶ୍ରୀ ସୂର୍ଯ୍ୟମଣି ସାମନ୍ତରାୟ,** ସବୁଜ ବାଣୀଶ୍ରୀ, ବଡ଼ଗଡ଼ ବ୍ରିଟ୍ କଲୋନୀ, ଭୁବନେଶ୍ୱର-୧୮ । ମୂଲ୍ୟ- ୫୦ ଟଙ୍କା ।

ଆ କୋଇଲି ଆ, ବଗ ଚାଲେ ଡଗଡଗ, କଳା ମଚମଚ ଡାମରାକାଉ, ବାଇ ଚଢ଼େଇରେ ବାଇ ଚଢ଼େଇ, ପରକଲମ ଇତ୍ୟାଦି ୨୦ଟି ପକ୍ଷୀଙ୍କର ୨୦ଟି କବିତା ଏହି କ୍ରାଉନ୍ ଆକାରର ଶିଶୁ କବିତା ପୁସ୍ତକରେ ସନ୍ନିବେଶିତ ।

ପ୍ରତି ପୃଷ୍ଠାରେ ସୁଦୃଶ୍ୟ ରଂଗିନ୍ ଚିତ୍ର ଭରପୂର ହୋଇ ରହିଛି, ଯାହାକି ଶିଶୁମାନଙ୍କ ଦୃଷ୍ଟିକୁ ଟାଣିନେବ । ଅକ୍ଷରଗୁଡ଼ିକ ବେଶ୍ ବଡ଼ ବଡ଼, ଶିକ୍ଷଣୀୟ, ସରଳ ଶିଶୁ-ଭାଷା ଉପଯୋଗୀ । କବିତାଗୁଡ଼ିକ ଶିଶୁ-ପାଠକମାନଙ୍କ ଦ୍ୱାରା ଆଦୃତ ହେବାର ଆଶା ।

ରଂଗିନ୍ ପ୍ରଚ୍ଛଦଟିରେ ଦୁଇଟି ଶିଶୁ ମୟୂର, ଶୁଆ ଓ ଚଢ଼େଇଙ୍କ ଚିତ୍ର ବେଶ୍ ମନୋମୁଗ୍ଧକର ।

**କୁନି ଚଢ଼େଇ**-- ଲେଖକ- **ଶ୍ରୀ ସୁଶାନ୍ତ କୁମାର ପାତ୍ର,** ଅରିଓ, କାରୁଳାଇପଡ଼ା, ଡେରାବିଶ, କେନ୍ଦ୍ରାପଡ଼ା- ୭୫୪୨୮୯, ମୂଲ୍ୟ - ୪୦ ଟଙ୍କା ।

ମାଛି-ମହୁମାଛି, ବଳିଆ ଓ ଭୂଆଁ, ବୁଦ୍ଧିପରୀକ୍ଷା, ଗାଈ ଆମରି ମାଆ, କୁଆଁର ପୂନେଇଁ ଗୀତ ଇତ୍ୟାଦି ୫୭ଟି ଶିଶୁ କବିତା ଏହି ଡିମେଇ ୧/୮ ଆକାରର ଶିଶୁ-କବିତା ପୁସ୍ତକରେ ରହିଛି ।

ପ୍ରତ୍ୟେକ ପୃଷ୍ଠାରେ ଚିତ୍ର ରହିଛି । କବିତାଗୁଡ଼ିକ ଶିକ୍ଷଣୀୟ । ରଂଗିନ୍ ପ୍ରଚ୍ଛଦଟି ଆକର୍ଷଣୀୟ । ପୁସ୍ତକଟି ଶିଶୁ-ପାଠକଙ୍କ ମନଲାଖି ହେବାର ଆଶା ।




୨୫।୩-- ରାଜ୍ୟରେ ପ୍ରଥମ ଚାଟାର୍ଡ ଆକାଉଣ୍ଟାଣ୍ଟ୍ ପ୍ରଫୁଲ୍ଲ ମହାନ୍ତିଙ୍କର ୮୮ ବର୍ଷରେ ଏବଂ ବିଶିଷ୍ଟ ଆଇନଜୀବୀ ତଥା ରାଜନେତା ହିତେନ୍ଦ୍ର କାନ୍‌ଗୋଙ୍କର ୭୪ ବର୍ଷରେ ପରଲୋକ । ସେ ଦୀର୍ଘଦିନ ଧରି ଆଇନ, ସେବା ପ୍ରାଧିକରଣ(ସ୍ୟାଟ୍)ରେ ସରକାରୀ ଓକିଲ ଏବଂ ରାଜନୀତିରେ ମଧ୍ୟ ସକ୍ରିୟ ଅଂଶଗ୍ରହଣ କରିଥିଲେ ।

୨୬।୩-- ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଓଡ଼ିଶୀ ନୃତ୍ୟଗୁରୁ ରମଣୀ ରଞ୍ଜନ ଜେନାଙ୍କର ୭୫ ବର୍ଷରେ ପରଲୋକ । ଅନେକ ଓଡ଼ିଆ ଚଳଚ୍ଚିତ୍ରରେ ସେ ନୃତ୍ୟ ପରିବେଷଣ କରି ସୁନାମ ଅର୍ଜନ କରିଥିଲେ ।

୨୫।୩-- ନେଦରଲାଣ୍ଡର ଫୁଟବଲ୍ କିମ୍ବଦନ୍ତୀ ଯୋହାନ୍ କ୍ରାୟଫଙ୍କର ୬୮ ବର୍ଷରେ ପରଲୋକ ।

୨୨।୪-- ଓଡ଼ିଶା ହାଇକୋର୍ଟର ବିଚାରପତି ଭବାନୀ ପ୍ରସାଦ ରାୟଙ୍କର ୬୧ ବର୍ଷରେ ପରଲୋକ ।

## ଶବ୍ଦଧନ୍ଦା ମଇ-୨୦୧୬

ଡ. ନିରଞ୍ଜନ ସାହୁ

**୧ ।** କାଗଜରେ ବା କାର୍ଡ଼ରେ ଘର କାଟି ଉତ୍ତର ଲେଖନ୍ତୁ ।
**୨ ।** ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ ।
**୩ ।** ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ ।
**୪ ।** ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।
**୫ ।** ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ ।
**୬ ।** ଉତ୍ତର ପହଞ୍ଚିବାର ଶେଷ ତାରିଖ **୨୨।୫।୨୦୧୬**
**୭ ।** ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | | |
|---|---|---|---|---|---|---|
| ୧ | | ୨ | ୩ | | ୪ | ✻ |
| | ✻ | | ୫ | | | |
| ୬ | ୭ | | | ୮ | ✻ | ✻ |
| ୯ | | | ୧୦ | | ୧୧ | |
| | | | ✻ | | | ✻ |
| ୧୨ | | ୧୩ | ✻ | ୧୪ | ୧୫ | ୧୬ |
| ୧୭ | | | | ✻ | ୧୮ | |

### ସୂଚନା

**ବାମରୁ ଡାହାଣ--** ୧ । ଏକପ୍ରକାର ଗ୍ୟାସ (୫), ୫ । ଭଦ୍ରପୂର୍ଣ୍ଣ ସମ୍ବୋଧନ (୪), ୬ । ଅଗ୍ନି (୨), ୯ । ଉଆସ (୩), ୧୦ । ମିଠା ମୂଳବିଶେଷ (୪), ୧୨ । ବାୟୁ (୩), ୧୪ । ପ୍ରସ୍ତାବ (୩), ୧୭ । ଏକପ୍ରକାର ଶାଗ (୪), ୧୮ । ଧ୍ୱନି (୨) ।

**ଉପରୁ ତଳ--** ୧ । ମହତ୍ କର୍ମ (୪), ୨ । ଅଦୃଶ୍ୟ ଆଲୋକ (୫), ୩ । ଏକପ୍ରକାର ରୋଗ (୩), ୪ । ଖ୍ୟାତି (୨), ୬ । ଅସୁର (୩), ୭ । ବିଷୟ (୩), ୮ । ରୋଦନ(୩), ୧୧ । ବାକ୍‌ଶକ୍ତିହୀନ (୨), ୧୩ । ମନୁଷ୍ୟ (୨), ୧୫ । କନ୍ୟା (୨), ୧୬ । ଶସ୍ୟବିଶେଷ(୨) ।

*--ସାହୁପଡ଼ା, ବରୀ, ଯାଜପୁର-୭୫୫୦୩୩*

---

**ଅପ୍ରେଲ ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧ । ମଧୁସୂଦନ ରାଓ, ୭ । ପରମେଶ୍ୱର, ୮ । ଘାଉଡ଼, ୧୧ । ସରମା, ୧୪ । ମାଗୁଣି, ୧୬ । ଇଠା, ୧୮ । ଆଲେକ୍‌ଜାଣ୍ଡର ।

**ଉପରୁ ତଳ--** ୧ । ମଦରଙ୍ଗା, ୩ । ସୂପକାର, ୪ । ଦରଘା, ୫ । ଓରଫ, ୯ । ଉପନେତ୍ର, ୧୦ । ଡମ୍ବରୁ, ୧୨ । ମାଣି / ମାନ, ୧୩ । କରିଆ, ୧୫ । ଶକୁଳ / ଗଡ଼ିଶା, ୧୭ । ଏକ ।

---

**ଗତମାସର ଠିକ୍ ଉତ୍ତରଦାତା- ପ୍ରଭାତ କୁମାର କୁଅଁର,** ସୁଗ୍ରୋ, ଜଳେଶ୍ୱର, ବାଲେଶ୍ୱର; **ରାଜକିଶୋର ସାହୁ,** ଓଡ଼ଗାଁ, ନୟାଗଡ଼; **ରାସେଶ୍ୱର ମହାନ୍ତ,** ଚମ୍ପୁଆ, କେନ୍ଦୁଝର; **ଶାଶ୍ୱତୀ ଅର୍ଘ୍ୟରୂପା ସାହୁ,** (୧୦ମ) ସରସ୍ୱତୀ ଶିଶୁ ବିଦ୍ୟା ମନ୍ଦିର, ଯାଜପୁର ।

**ଶବ୍ଦଧନ୍ଦା ପ୍ରସ୍ତୁତକାରୀମାନଙ୍କ ପାଇଁ ବିଶେଷ ସୂଚନା-- ଶବ୍ଦଧନ୍ଦା ବ୍ୟାକରଣଗତ ଶବ୍ଦ ଜାଣିବା ପାଇଁ ଏକପ୍ରକାର ମାନସିକ କସରତ । ଏଥିରେ ନାମ, ସ୍ଥାନ ଇତ୍ୟାଦି ସାଧାରଣଜ୍ଞାନ ରୂପକ ଶବ୍ଦ ନ ଦେବା ପାଇଁ ଅନୁରୋଧ ।**

# ପୃଥ୍ୱୀ କ୍ଷଣକ୍ଷଣକେ ଆନ

## ଓଡ଼ିଶା ଖବର

୨୭। ୩-- ଅବସରପ୍ରାପ୍ତ ସିଆରପିଏଫ୍ ମହାନିର୍ଦ୍ଦେଶକ ପ୍ରକାଶ ମିଶ୍ର ଉତ୍ତରାଖଣ୍ଡ ରାଜ୍ୟପାଳ କେ.କେ.ପଲ୍ଙ୍କ ପରାମର୍ଶଦାତା ଭାବେ ନିଯୁକ୍ତ ।

୨୮। ୩-- ଓଡ଼ିଆ ପ୍ରତିଭା-- ନୀଳମାଧବ ପଣ୍ଡା, ଶେଫାଳୀ କବି, ହଳଧର ନାଗ ଓ ଟେକ୍ସଟାଇଲ୍ ଡିଜାଇନ୍‌ରେ ଶ୍ରୀଭାଷ ସୂପକାରଙ୍କୁ ସମ୍ମାନଜନକ 'ପଦ୍ମଶ୍ରୀ' ପୁରସ୍କାର ପ୍ରଦାନ ।

-- ୬୩ତମ ଜାତୀୟ ଚଳଚ୍ଚିତ୍ର ପୁରସ୍କାର ଉତ୍ସବରେ ଓଡ଼ିଆ ସିନେ ନିର୍ମାତା ସବ୍ୟସାଚୀ ମହାପାତ୍ରଙ୍କର 'ପାହାଡ଼ର ଲୁହ' ଆଞ୍ଚଳିକ ବର୍ଗର ଶ୍ରେଷ୍ଠ ସିନେମା ରୂପେ, ନିର୍ଦ୍ଦେଶକ ଅପୂର୍ବ ବୀରଙ୍କର 'ନାନକଶାହ ଫକୀର'(ହିନ୍ଦୀ) ଏବଂ ସୌମେନ୍ଦ୍ର ପାଢ଼ୀଙ୍କର 'ଦୂରନ୍ତ' ଶ୍ରେଷ୍ଠ ଚଳଚ୍ଚିତ୍ର ଭାବେ ପୁରସ୍କୃତ ହୋଇଛି ।

୨। ୪-- ଡାଲି ଓ ଗହମଜାତ ପଦାର୍ଥ ଉପରୁ ଭାଟ୍ ଛାଡ଼ ଦାବିରେ ଆନ୍ଦୋଳନ ଚଳାଇଥିବା ବ୍ୟବସାୟୀ ମହାସଂଘଙ୍କର ଆନ୍ଦୋଳନ ପ୍ରତ୍ୟାହୃତ ।

୧୩।୪-- ୩୦ ବର୍ଷର ରେକର୍ଡ ଭାଙ୍ଗି ରାଜଧାନୀ ଭୁବନେଶ୍ୱରରେ ୪୫.୮° ସେଲ୍‌ସିୟସ ଉତ୍ତାପ ଅନୁଭୂତ ।

୧୪।୪-- ମଙ୍ଗୋଲିଆର ଉଲାନ୍‌ବାଟରରେ ଉଦ୍‌ଯାପିତ ଏସୀୟ ଯୁବ ଚେସ୍‌ରେ ଓଡ଼ିଶାର ଅନ୍ୱେଷା ମିଶ୍ରଙ୍କର ସ୍ୱର୍ଣ୍ଣପଦକ ହାସଲ ।

୧୮।୪-- ଦେବଗଡ଼ର ଗଇଲୋ ଘାଟିଠାରେ ୩୦୦ଫୁଟ ତଳକୁ ବସ୍ ଖସିପଡ଼ିବାରୁ ରାଜ୍ୟର ପ୍ରମୁଖ ଅପେରା ପାର୍ଟି 'ଭାରତୀ ଗଣନାଟ୍ୟ'ର ମାଲିକ, ପରିଚାଳକ ଓ କଳାକାର ସମେତ ୩୦ ମୃତ ଓ ୬ ଆହତ ।

## ଭାରତ ଖବର

୨୮। ୩-- ଦେଶର ୫୬ ଜଣଙ୍କୁ ପଦ୍ମ ପୁରସ୍କାର ପ୍ରଦାନ ଏବଂ ୬୩ତମ ଜାତୀୟ ଚଳଚ୍ଚିତ୍ର ଉତ୍ସବରେ ଶ୍ରେଷ୍ଠ ଅଭିନେତା ଅମିତାଭ ବଚ୍ଚନ (ପିକୁ), ଶ୍ରେଷ୍ଠ ଅଭିନେତ୍ରୀ କଙ୍ଗନା ରଣାଓ୍ୱତ (ତନୁ ଓ୍ୱେଡ୍ସ ମନୁ ରିଟର୍ଣ୍ଣସ୍) ଏବଂ ଶ୍ରେଷ୍ଠ ନିର୍ଦ୍ଦେଶକ ସଞ୍ଜୟ ଲୀଲା ବଂଶାଲୀ (ବାଜିରାଓ ମସ୍ତାନୀ) ପୁରସ୍କୃତ ।

୩୧।୩-- ପଶ୍ଚିମବଙ୍ଗ ବଡ଼ବଜାରଠାରେ ନିର୍ମାଣାଧୀନ ଫ୍ଲାଏ ଓଭର ଭୁଶୁଡ଼ି ୨୧ ଜଣ ମୃତ ଓ ଶତାଧିକ ଆହତ ।

୪। ୪-- ଜାମ୍ମୁ-କାଶ୍ମୀରର ୧୩ଶ ପ୍ରଥମ ମହିଳା ମୁଖ୍ୟମନ୍ତ୍ରୀ ଭାବେ ପିଡିପି ନେତ୍ରୀ ମେହବୁବା ମୁଫତିଙ୍କର ଶପଥ ଗ୍ରହଣ ।

୫। ୪-- ଭାରତୀୟ ରେଳବାଇରେ ଏକ ନୂଆ ଇତିହାସ ସୃଷ୍ଟି କରି ଦେଶର ପ୍ରଥମ ସେମି ବୁଲେଟ୍ ଟ୍ରେନ୍ 'ଗତିମାନ ଏକ୍ସପ୍ରେସ'ର ଦିଲ୍ଲୀ, ହଜରତ ନିଜାମୁଦ୍ଦିନ୍ ଷ୍ଟେସନରୁ ଯାତ୍ରାରମ୍ଭ ।

୮। ୪-- ୪୦୦ ବର୍ଷ ପରମ୍ପରାକୁ ଭାଙ୍ଗି ମହାରାଷ୍ଟ୍ରର ଅହମ୍ମଦନଗର ଜିଲ୍ଲାର ପ୍ରସିଦ୍ଧ ଶନି ସିଙ୍ଗଣପୁର ମନ୍ଦିରରେ ମହିଳାଙ୍କର ପ୍ରବେଶ ।

-- କର୍ଣ୍ଣାଟକର ପୂର୍ବତନ ମୁଖ୍ୟମନ୍ତ୍ରୀ ବି.ଏସ୍. ୟେଦୁରାପ୍ପା ରାଜ୍ୟ ବିଜେପି ସଭାପତି ଘୋଷିତ ।

୭ ।୪-- ମୁମ୍ବାଇ ଠାରେ ଆଇ.ପି.ଏଲ୍. କ୍ରିକେଟ୍ ଟୁର୍ଣ୍ଣାମେଣ୍ଟର ନବମ ସଂସ୍କରଣ ଉଦ୍‌ଘାଟିତ ।

୧୧। ୪-- କେରଳ ରାଜ୍ୟର କୋଲ୍ଲମ ଜିଲ୍ଲା ପୁଟ୍ଟିଙ୍ଗର ମନ୍ଦିରରେ ବାଣ ବିସ୍ଫୋରଣଜନିତ ଅଗ୍ନିକାଣ୍ଡ ଘଟି ୧୧୦ ମୃତ ଓ ୧୫୦ ଆହତ ।

୧୨। ୪-- ଅଭିଜ୍ଞ କ୍ରିକେଟ୍ ଭାଷ୍ୟକାର ହର୍ଷ ଭୋଗଲେ ଆଇପିଏଲ୍ ମ୍ୟାଚର ଘୋଷକ ଦାୟିତ୍ୱରୁ ବିଦାୟ ନେଲେ ।

୧୩। ୪-- ଏମ୍‌ବିବିଏସ୍, ବିଡିଏସ୍ ଓ ସ୍ନାତକୋତ୍ତର ଡାକ୍ତରୀ ପାଠ୍ୟକ୍ରମରେ ନାମଲେଖା ପାଇଁ ଏଣିକି ସର୍ବଭାରତୀୟ ଗୋଟିଏ ପ୍ରବେଶିକା ପରୀକ୍ଷା କରିବା ପାଇଁ ସୁପ୍ରିମ କୋର୍ଟର ରାୟ ।

-- ଦୀର୍ଘ ୧୦୦ ବର୍ଷ ପରେ ବିଶ୍ୱରେ ବ୍ୟାଘ୍ର ସଂଖ୍ୟା ବୃଦ୍ଧି । ଭାରତରେ ଶତକଡ଼ା ୨୨ ପ୍ରତିଶତ ବୃଦ୍ଧି ।

୧୪। ୪-- ପାକିସ୍ତାନ ସୀମାରେ ପଞ୍ଚସ୍ତରୀୟ ସୁରକ୍ଷା ବ୍ୟବସ୍ଥା ପାଇଁ କେନ୍ଦ୍ରର ଅନୁମୋଦନ ।

୨୨। ୪-- ଉତ୍ତରାଖଣ୍ଡରେ ଜାରି ହୋଇଥିବା ରାଷ୍ଟ୍ରପତି ଶାସନ ହାଇକୋର୍ଟ ଦ୍ୱାରା ରଦ୍ଦ ।

## ବିଦେଶ ଖବର

୨୨। ୩-- ବେଲଜିୟମର ରାଜଧାନୀ ବ୍ରସେଲ୍ସର ବିମାନବନ୍ଦର ଓ ମେଟ୍ରୋ ଷ୍ଟେସନରେ ଆତଙ୍କବାଦୀ ବିସ୍ଫୋରଣରେ ୩୪ ମୃତ ଓ ୧୫୦ ଜଣ ଆହତ ।

୩।୪-- ଓ୍ୱେଷ୍ଟିଇଣ୍ଡିଜ୍ ବିଶ୍ୱର ପ୍ରଥମ ଦଳ ଭାବେ ଦ୍ୱିତୀୟ ଥର ପାଇଁ ଟ୍ୱେଣ୍ଟି ୨୦ ବିଶ୍ୱକପ୍ ଚମ୍ପିଆନ୍ ଆଖ୍ୟା ହାସଲ ।

୧୬।୪-- ଜାପାନରେ ଶକ୍ତିଶାଳୀ ଭୂକମ୍ପରେ ୩୨ ମୃତ ଓ ୧୫୦୦ରୁ ଅଧିକ ଆହତ । ଦକ୍ଷିଣ ଆମେରିକାର ଇକ୍ୱେଡରଠାରେ ଭୂକମ୍ପ ଯୋଗୁଁ ୨୩୩ ମୃତ ଓ ୫୮୮ ଆହତ ।

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075, 2422597